
ଭାରତ କିପରି
ସ୍ୱାଧୀନତା ପାଇଲା
ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

1979 ( ଶକାବ୍ଦ 1900 )



ଟଙ୍କା



HOW INDIA WON
HER FREEDOM (*Oriya*)

PUBLISHED BY THE DIRECTOR, NATIONAL BOOK TRUST, INDIA, A–5 GREEN PARK, NEW DELHI-110016 AND PRINTED AT REKHA PRINTERS PRIVATE LTD., NEW DELHI-110020. COVER AND ILLUSTRATIONS PRINTED AT THOMSON PRESS, FARIDABAD.

# ଭାରତ କିପରି ସ୍ୱାଧୀନତା ପାଇଲା

ଲେଖକ କୃଷ୍ଣ ଚୈତନ୍ୟ
ଚିତ୍ର ଜ୍ୟୋତିଷ ଦତ୍ତ ଗୁପ୍ତ
ଅନୁବାଦ ରାମ ପ୍ରସାଦ ମହାନ୍ତି

ଅଗଷ୍ଟ ପନ୍ଦର ଛୁଟି ।
କାହିଁକି ?
କାରଣ ସେ ଦିନଟି ସ୍ୱାଧୀନତା ଦିବସ ।
ସ୍ୱାଧୀନତା ଦିବସ କଣ ?
ଠିକ୍ ଏହିଦିନ ୧୯୪୭ରେ ଭାରତ ମୁକ୍ତି ପାଇଥିଲା, ସ୍ୱାଧୀନ ହୋଇଥିଲା । ତେବେ ୧୯୪୭ ପୂର୍ବରୁ ଭାରତ ସ୍ୱାଧୀନ ହୋଇ ନଥିଲା କାହିଁକି ?

ବ୍ରିଟେନ ପାଖରେ ଭାରତ କିପରି ସ୍ୱାଧୀନତା ହରାଇଲା ଏବଂ ପୁଣି ସେହି ସ୍ୱାଧୀନତା ଫେରାଇ ଆଣିବା ପାଇଁ ତାକୁ କିପରି ବହୁ ବର୍ଷଧରି ନାନା ଭାବରେ ଲଢ଼ିବାକୁ ପଡ଼ିଥିଲା, ଏହା ହେଉଛି ସେହି ଲଢ଼େଇର କାହାଣୀ ।

ଆମ ଇତିହାସରୁ ଜଣାଯାଏ ଯେ ପୃଥିବୀର ବିଭିନ୍ନ ଦେଶରୁ ଲୋକମାନେ ଆମ ଦେଶକୁ ବାଣିଜ୍ୟ କରିବା ପାଇଁ ଆସିଛନ୍ତି । ଆମ ଦେଶରେ ଯାହା ଫଳେ ଓ ଆମେ ଯାହା ତିଆରି କରୁ ସେଥିମଧ୍ୟରୁ ଅନେକ ଜିନିଷର ଚାହିଦା ବିଦେଶରେ ଖୁବ୍ ବେଶିଥିଲା । ଆମ ଦେଶର ରେଶମ ଓ ହସ୍ତଶିଳ୍ପ ଖୁବ୍ ବିଖ୍ୟାତ । ଆମ ଦେଶରେ ଯେଉଁ ଲୁଗା ବୁଣା ହେଉଥିଲା, ବିଦେଶରେ ତାର ଖୁବ୍ ଆଦର ଥିଲା । ଗୋଲମରିଚ, ଡାଲଚିନି ପ୍ରଭୃତି ଯେଉଁ ମସଲାସବୁ ଭାରତରେ ହେଉଥିଲା, ୟୁରୋପରେ ତା'ର ଚାହିଦା ଥିଲା ଖୁବ୍ ବେଶୀ । ଫୋନେସିଆନ୍ ବୋଲି ଗୋଟିଏ ଜାତିର ଲୋକେ ଏହି ସବୁ ଜିନିଷକୁ ପ୍ରଥମେ ଆମ ଦେଶରୁ ନେଇ ବିଦେଶରେ ବେପାର କରୁଥିଲେ । ଏମାନେ ଆଫ୍ରିକା ମହାଦେଶର ଉତ୍ତରରେ ଭୂମଧ୍ୟସାଗର ଉପକୂଳରେ ବସବାସ କରୁଥିଲେ ଏବଂ ଆଗକାଳରେ ଏଇମାନେ ଥିଲେ ସବୁଠାରୁ ଚତୁର ବେପାରୀ । ତାଙ୍କ ପରେ ଏହି ବେପାର ଚଳାଇଲେ ଗ୍ରୀକ୍, ରୋମାନ ଓ ଆରବ ବେପାରୀମାନେ



କିନ୍ତୁ ପାଞ୍ଚଶହ ବର୍ଷ ତଳେ ଏ ସବୁ ବଦଳିଗଲା । ୟୁରୋପର ଲୋକେ ତାଙ୍କର ଯାହା ଦରକାର ସେ ସବୁ ପାଇବା ପାଇଁ ନୂଆ ନୂଆ ଉପାୟ ଚିନ୍ତା କଲେ । ସେମାନେ ଭାବିଲେ, "ଆମର ବଳ ଅଛି, ଆମର ବନ୍ଧୁକ ମଧ୍ୟ ଅଛି । ଆମେ ଯଦି ଆଫ୍ରିକା ଓ ଏସିଆର ବିଭିନ୍ନ ଦେଶକୁ ଜୟକରି ପାରିବା, ତାହାହେଲେ ଆମେ ଯାହା ଚାହିଁବା, ତାହା ଆଣି ପାରିବା । ସେଥିପାଇଁ ଆମକୁ ପଇସା ଦେବାକୁ ପଡ଼ିବ ନାହିଁ । ଆମ କାମ କରିବା ସକାଶେ ଲକ୍ଷ ଲକ୍ଷ ଲୋକ ମଧ୍ୟ ଆମକୁ ମିଳିଯିବେ ।"

ଏଇ କଥା ଭାବି ପ୍ରଥମେ ପର୍ତ୍ତୁଗୀଜ୍‌ମାନେ ଭାରତରେ ଆସି ପହଞ୍ଚିଲେ । ୧୪୯୮ରେ ସେମାନଙ୍କର ଗୋଟିଏ ଜାହାଜ କାଲିକଟ୍ ବନ୍ଦରକୁ ଆସିଲା । ସେତେବେଳେ କାଲିକଟର ଶାସକ ଥିଲେ ଜାମୋରିନ୍ । ସେ ପ୍ରଥମେ ଖୁବ୍ ଖୁସି ହୋଇଗଲେ । ସେ ଭାବିଲେ, ଗୋଟିଏ ନୂଆ ଦେଶରୁ ବଣିକମାନେ ବେପାର କରିବାକୁ ଆସିଛନ୍ତି । ଯେତେ ବେଶୀ ବେଶୀ ବେପାର ହେବ, ଉଭୟ ଦେଶର ଲୋକେ ସେତେ ବେଶୀ ଲାଭବାନ ହେବେ । କିନ୍ତୁ ଏହାର ଫଳ ଅତ୍ୟନ୍ତ ବିଷମୟ ହେଲା । ପର୍ତ୍ତୁଗୀଜମାନେ ଚାହିଁଲେ, କେବଳ ସେମାନେହିଁ ଏକଚାଟିଆ ବାଣିଜ୍ୟ କରିବେ । ଆଉ ଯେଉଁ ଦେଶର ଲୋକେ ଭାରତ ସହିତ ବାଣିଜ୍ୟ କରିବାକୁ ଆସିବେ, ସେମାନେ ତାଙ୍କ ଜାହାଜ ଦଖଲ କରିନେବେ, ନଚେତ ସମୁଦ୍ରରେ ବୁଡ଼ାଇ ଦେବେ । ସେ ସବୁ ଜାହାଜର ନାବିକ ଓ ବଣିକମାନଙ୍କୁ ମାରିଦେଇ ତାଙ୍କ ଜିନିଷ ଛଡ଼ାଇ ନେବେ । ତେଣୁ ଶହଶହ ବର୍ଷ ଧରି ଆରବମାନେ ଭାରତ ସାଥିରେ ବନ୍ଧୁଭାବରେ ଯେଉଁ ବେପାର ଚଳାଉଥିଲେ, ତାହା ବନ୍ଦ ହୋଇଗଲା । ସେତେବେଳକୁ ଦକ୍ଷିଣ ଭାରତର ପଶ୍ଚିମ ଉପକୂଳ ଅନେକ ଛୋଟ ଛୋଟ ରାଜ୍ୟରେ ଭାଗ ଭାଗ ହୋଇଥାଏ । ପର୍ତ୍ତୁଗୀଜ-ମାନେ ଏହି ଛୋଟ ରାଜ୍ୟ ଗୁଡ଼ିକୁ ନିଜ ନିଜ ଭିତରେ ଯୁଦ୍ଧ କରିବା ପାଇଁ ମତାଇ ଦେଲେ । କିନ୍ତୁ ଯେଉଁ ରଜାମାନେ ପର୍ତ୍ତୁଗୀଜଙ୍କ ଠାରୁ ସାହାଯ୍ୟ ନେଇ ଯୁଦ୍ଧରେ ଜିଣିଲେ, ଶେଷରେ ଦେଖିଲେ ଯେ ସେମାନେ ପର୍ତ୍ତୁଗୀଜଙ୍କର କ୍ରୀତଦାସ ହୋଇ ପଡ଼ିଛନ୍ତି । ସେମାନେ ଗୋଲମରିଚ ଓ ଅନ୍ୟାନ୍ୟ ଜିନିଷ ଅତି ଶସ୍ତାରେ ପର୍ତ୍ତୁଗୀଜମାନଙ୍କୁ ବିକିବା ପାଇଁ ବାଧ୍ୟ ହେଲେ ।



ୟୁରୋପର ଅନ୍ୟାନ୍ୟ ଦେଶର ଲୋକେ ଦେଖିଲେ ଯେ ପର୍ତ୍ତୁଗୀଜମାନେ କମ୍ ସମୟ ଭିତରେ ଖୁବ୍ ଧନୀ ହୋଇ ଯାଉଛନ୍ତି । ସେମାନଙ୍କର ମଧ୍ୟ ସେହିପରି ଅସାଧୁ ଉପାୟରେ ଧନୀ ହେବାକୁ ଇଚ୍ଛା ହେଲା । ତେଣୁ ଓଲନ୍ଦାଜ ବାଣିଜ୍ୟ ଜାହାଜ ଗୋଟି ଗୋଟି ହୋଇ ଭାରତକୁ ଆସିଲେ । ତାପରେ ଆସିଲେ ଫରାସୀମାନେ । ଶେଷରେ ଇଂରେଜମାନେ ଆସିଲେ । ଲୋଭୀ ଲୋକେ ତ ଭାଗବାଣ୍ଟାକୁ ଘୃଣା କରନ୍ତି । ତେଣୁ ବିଦେଶୀ ବଣିକଙ୍କର ନିଜ ନିଜ ଭିତରେ ଝଗଡ଼ା ଲାଗିଗଲା । କାରଣ ପ୍ରତ୍ୟେକେ ଚାହିଁଲେ କେବଳ ନିଜେ ବେପାର କରିବେ । ଶେଷରେ ଇଂରେଜ ବଣିକମାନଙ୍କର ଜିତାପଟ ହେଲା ।

ଇଂଲଣ୍ଡର ଯେଉଁ ଲୋକମାନେ ଭାରତକୁ ଆସିଲେ, ସେମାନେ ହେଲେ ଇଷ୍ଟ ଇଣ୍ଡିଆ କମ୍ପାନୀର ଲୋକ । ଏହି କମ୍ପାନୀ ହେଉଛି ଗୋଟିଏ ବେପାରୀଦଳ । ବେପାରୀମାନଙ୍କର ତ ସୈନ୍ୟ ରଖିବା କିମ୍ବା ବେପାର ପାଇଁ ଲଢ଼େଇ କରିବା କଥା ନୁହେଁ । କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଯେତେବେଳେ ସୁରଟ, ମାନ୍ଦ୍ରାଜ, କଲିକତା ଓ ବମ୍ବେ ଭଳି ଜାଗାରେ ମାଲଗୋଦାମ ତିଆରି କରିବା ପାଇଁ ଅନୁମତି ମିଳିଲା ସେ ଗୋଦାମ ସାଥିକୁ ଦୁର୍ଗ ମଧ୍ୟ ତିଆରିକଲା । ସେଥିରେ କମ୍ପାନୀର ଯେଉଁ ସୈନ୍ୟ ରହିଲେ, ତାର ସଂଖ୍ୟା ମଧ୍ୟ ବର୍ଷକୁ ବର୍ଷ ବଢ଼ିବାରେ ଲାଗିଲା ।



ସେତେବେଳେ ବଙ୍ଗର ନବାବ ଥାଆନ୍ତି ସିରାଜୁଦ୍ଦୌଲା । ସେ ଭାବିଲେ ବଣିକମାନଙ୍କର, ବିଶେଷତଃ ବିଦେଶରୁ ଯେଉଁମାନେ ବେପାର କରିବାକୁ ଆସିଛନ୍ତି, ସେମାନଙ୍କର ପୁଣି ଦୁର୍ଗ, ସୈନ୍ୟ ସାମନ୍ତ, ବନ୍ଧୁକ, ଏସବୁ ରଖିବା କି ଦରକାର ? ସେ କମ୍ପାନୀକୁ ହୁକୁମ ଦେଲେ କଲିକତା ଦୁର୍ଗରେ ତୁମେ ଯେଉଁ ବନ୍ଧୁକ ରଖିଛ, ସେ ସବୁକୁ ଉଠାଇ ନିଅ । ଏଥିରେ ଇଷ୍ଟ ଇଣ୍ଡିଆ କମ୍ପାନୀ ରାଜି ହେଲେନାହିଁ । ତେଣୁ ଯୁଦ୍ଧହେଲା । ୧୭୫୭ ପଲାସୀ ଯୁଦ୍ଧରେ ନବାବ ହାରିଗଲେ ଓ ଶେଷରେ ନିହତ ହେଲେ । ଯୁଦ୍ଧ ପୂର୍ବରୁ ଇଂରେଜମାନେ ନବାବଙ୍କ ସେନାପତିଙ୍କୁ ଲାଞ୍ଚଦେଇ ହାତକରି ନେଇଥିଲେ । ସେନାପତି ବିଶ୍ୱାସଘାତକତା କଲେ । ତେଣୁ ଇଂରେଜମାନେ ତାଙ୍କୁ ଗାଦିରେ ବସାଇଲେ, ପରେ ତାଙ୍କୁ ଗାଦିରୁ ତଡ଼ି ଦେଇ ଆଉ ଜଣକୁ ନବାବ କଲେ । ଇଂରେଜମାନେ ଏଣିକି ଯାହା ଚାହିଁଲେ ପ୍ରଥମେ ପ୍ରଥମେ ନୂଆ ନବାବ ତାହା ପୂରଣ କଲେ । କିନ୍ତୁ ପରେ ସେମାନଙ୍କ ଲୋଭ ଓ ଅପମାନଜନକ ବ୍ୟବହାର ସହି ନପାରି ସେ ଖୁବ୍ ରାଗିଗଲେ । ସେ ସ୍ଥିରକଲେ ଦିଲ୍ଲୀର ମୋଗଲ ବାଦଶାହଙ୍କ ସାହାଯ୍ୟରେ ଇଂରେଜମାନଙ୍କ ସହିତ ଲଢ଼େଇ କରିବେ । କିନ୍ତୁ ଇଂରେଜ ସୈନ୍ୟ ବହୁତ ଶକ୍ତିଶାଳୀ ଥିଲେ । ନବାବ ଓ ତାଙ୍କ ସୈନ୍ୟମାନେ ହାରିଗଲେ । ଏବେ ଇଂରେଜମାନେ ଦାବି କଲେ ଯେ ବଙ୍ଗକୁ ଶାସନ କରିବା ପାଇଁ କେବଳ ନବାବ ନୁହେଁ, ସେମାନେ ମଧ୍ୟ ହକଦାର ହେବେ ।

ବାଦଶାହ ବାଧ ହୋଇ ରାଜି ହେଲେ ଓ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ବଙ୍ଗ ପ୍ରଦେଶର ଦେଓ୍ୱାନୀ ଦିଆଗଲା । ଏହି ପରି ଭାବରେ ଇଂରେଜ ବଣିକମାନେ ଆମ ଦେଶକୁ ଆସି ଆମର ଶାସକ ହୋଇଗଲେ ।

ତା ପରେ ଆହୁରି ଶହେ ବର୍ଷ କଟିଗଲା । କମ୍ପାନୀ ଆହୁରି କେତେକ ମୁଲକର ମାଲିକ ହୋଇ ବସିଲା । ସବୁ ଶ୍ରେଣୀର ଲୋକଙ୍କୁ ଇଂରେଜମାନେ ଲୁଟିବାରେ ଲାଗିଲେ । ଚାଷୀମାନଙ୍କ ଉପରେ ମନ ଇଚ୍ଛା କର ବସାଇଲେ । ନାନା ପ୍ରକାର କଳ କୌଶଳ କରି ସେମାନେ ବହୁ ପରିମାଣରେ ଧନ ସମ୍ପଦ ଅର୍ଜନ କଲେ । ଉଦାହରଣ ସ୍ୱରୂପ ନୀଳ-ରଙ୍ଗ । ନୀଳଗଛରୁ ଏହି ରଙ୍ଗ କରିବା ପଦାର୍ଥ ମିଳେ । ଏହା ଖୁବ୍ ମୂଲ୍ୟବାନ । ଏଥିରେ ଲୁଗା ରଙ୍ଗ ହୁଏ । ତେଣୁ ଇଂରେଜମାନଙ୍କ ଛଡ଼ା ଆଉ କାହାରିକୁ ନୀଳରଙ୍ଗ ବେପାର କରିବା ପାଇଁ ଦିଆଗଲା ନାହିଁ । ଚାଷୀମାନଙ୍କର ଖାଇବା ପାଇଁ ଧାନ କି ଗହମ ଚାଷ ନିତାନ୍ତ ଜରୁରୀ; ଅଥଚ ସେମାନଙ୍କୁ ନିଜ ଜମିରେ ନୀଳଚାଷ କରିବା ପାଇଁ ବାଧ କରାଗଲା । ତା'ପରେ ସେହି ନୀଳ ଶସ୍ତାରେ ଗୋରା ବେପାରୀଙ୍କୁ ବିକିବା ପାଇଁ ସେମାନେ ବାଧ ହେଲେ । ତାର ଦର ପୁଣି ସ୍ଥିର କଲେ ସେହି ଗୋରା ବେପାରୀମାନେ ।

ଇଷ୍ଟ ଇଣ୍ଡିଆ କମ୍ପାନୀ ଆଗ ଦର ଠିକ୍ କରି ଦେଉଥିଲା, ସେହି ଦରରେ ସୁରଟର ତୁଳା ଲୁଗା ବୁଣାଳି ଓ ବଙ୍ଗର ରେଶମ ଲୁଗା ବୁଣାଳି ବିଲାତର ଗୋରା ବେପାରୀଙ୍କୁ ଲୁଗାପଟା ବିକିବା ପାଇଁ ବାଧ ହେଉଥିଲେ । କମ୍ପାନୀର ଏହି ଦର ଖୁବ୍ କମ୍ । ତେଣୁ ଗରିବ ଚାଷୀ ଓ ବୁଣାଳିମାନେ ସାମାନ୍ୟ କିଛି ଅଧିକ ପଇସା ପାଇବା ଆଶାରେ ତାଙ୍କର ନୀଳ, ରେଶମ ଓ ତୁଳା ଲୁଗା ଲୁଚିଚୋରିରେ ଅନ୍ୟକୁ ମଧ୍ୟ ବିକିବା ପାଇଁ ଚେଷ୍ଟା କରୁଥିଲେ । ଯଦି ଧରା ପଡ଼ିଲେ ସେମାନଙ୍କୁ କୋରଡ଼ା ମାଡ଼ ହେଉଥିଲା ଓ ଜେଲକୁ ପଠା ଯାଉଥିଲା ।



କୌଣସି ଗାଆଁର କୌଣସି ଚାଷୀ ଯଦି ଅନ୍ୟକୁ ତା ଜିନିଷ ବିକି କଲା ତେବେ ନୀଳ ବଗିଚାର ଗୋରା ମାଲିକମାନେ ଗାଆଁକୁ ଗାଆଁ ନିଆଁ ଲଗାଇ ଦେଉଥିଲେ । ଇଂରେଜମାନେ ଯେଉଁ କଳ କାରଖାନା ବସେଇଥିଲେ, ସେଠାରେ ମୂଲିଆଙ୍କ ଅବସ୍ଥା ମଧ୍ୟ ସେହିପରି ଶୋଚନୀୟ ।

ଭାରତର ବିଭିନ୍ନ ରାଜ୍ୟର ରଜା ମହାରାଜାମାନେ ମଧ୍ୟ ସେତେବେଳକୁ ରାଗି ଯାଇଥାନ୍ତି, କାରଣ ଇଂରେଜମାନେ ଯାହା ହୁକୁମ ଦେଉଥାନ୍ତି, ସେମାନଙ୍କୁ ତାହା ମାନିବାକୁ ପଡ଼ୁଥାଏ । କମ୍ପାନୀର ବଡ଼ଲାଟ ଲର୍ଡ ଡେଲହାଉସୀ ଗୋଟିଏ ଆଇନ କରିଥାନ୍ତି ଯେ ଯେଉଁ ଦେଶୀୟ ଶାସକଙ୍କ ମୃତ୍ୟୁ ହେବ ଓ ତାଙ୍କ ପରେ ରାଜଗାଦିରେ ବସିବା ପାଇଁ ଯଦି ତାଙ୍କର ପୁଅ ନଥିବେ ସେ ରାଜ୍ୟ ଇଂରେଜଙ୍କ ଇଲାକାରେ ସାମିଲ ହୋଇଯିବ ।

ଏହିପରି ଅସାଧୁ ଉପାୟରେ ଇଂରେଜମାନେ ତାଙ୍କର ଧନ ସମ୍ପଦ ଓ ସାମ୍ରାଜ୍ୟ ବଢ଼ାଉଥାନ୍ତି । ଏହି ଧନ ସେମାନେ ଯେପରି ଭାବରେ ଖର୍ଚ୍ଚ କରୁଥାନ୍ତି, ସେଥିରେ ଭାରତର ଦୁଃଖ କେବଳ ବଢ଼ୁଥାଏ ।

ତୁମ ଭିତରୁ କେହି କେହି ହାତ ତନ୍ତ ଦେଖିଥିବ । କେହି କେହି ମଧ୍ୟ ଲୁଗା କଲ ଦେଖିଥିବ । ସମସ୍ତେ ଅନ୍ତତଃ ଦୁଇଟିଯାକର ଛବି ତ ଦେଖିଥିବ । ହାତ ତନ୍ତରେ ବିଶେଷ କିଛି ଖର୍ଚ୍ଚ ନାହିଁ, ମାତ୍ର ସେଥିରେ ଅଳ୍ପ ଲୁଗା ବୁଣା ହୋଇ ପାରିବ । ଲୁଗା କଲରୁ ବହୁତ ଲୁଗା ବାହାରେ ; କିନ୍ତୁ ଲୁଗା କଲ ବସାଇବା ପାଇଁ ଯନ୍ତ୍ରପାତି ତିଆରି କରିବା ଓ କିଣିବା ସକାଶେ ବହୁତ ଟଙ୍କା ପଇସା ଦରକାର । ପ୍ରାୟ ୧୭୭୦ ମସିହା ପର୍ଯ୍ୟନ୍ତ ବିଲାତରେ ସୂତାକଟା ଓ ଲୁଗାବୁଣା କାମ ଛୋଟ ଛୋଟ ତନ୍ତରେ ଚାଲୁଥିଲା । ଜେମସ୍ ଓ୍ୱାଟ ବାଷ୍ପୀୟ ଇଞ୍ଜିନ ଉଦ୍‌ଭାବନ କଲେ । ତା ପରେ ବଡ଼ ବଡ଼ କଲ କାରଖାନା ଓ ମିଲ ବସାଇବା ମଣିଷ ପକ୍ଷରେ ସମ୍ଭବ ହେଲା । ଆଗେ ମଣିଷ ଯେଉଁ କାମ ହାତରେ କରୁଥିଲା ଏବେ ସେଥିରୁ ଅନେକ କାମ ମେସିନ୍ କଲା । କିନ୍ତୁ ଏ ସବୁ ମେସିନ ଓ ଯନ୍ତ୍ରପାତି ତିଆରି କରିବା ଓ କଳକାରଖାନା ବସାଇବା ସକାଶେ ବିଲାତର ତ ବହୁତ ଟଙ୍କା ପଇସା ଦରକାର । ବିଲାତର ଲୋକ କିମ୍ବା ସରକାରଙ୍କର ଏତେ ଟଙ୍କା ନ ଥିଲା । ଇଂରେଜମାନେ ଭାରତରୁ ଯେଉଁ ଧନ ସମ୍ପଦ ଲୁଟି କରି ବିଲାତକୁ ପଠାଇଲେ ସେଥିରେହିଁ ଏହିସବୁ ବଡ଼ କଲ କାରଖାନା ବସାଇବା ସମ୍ଭବ ହେଲା ।

ତୁମେ କେବେ କେବେ ଲୋକମାନଙ୍କ ମୁହଁରୁ 'ଶିଳ୍ପ-ବିପ୍ଳବ' କଥା ଶୁଣିଥିବ । ଏ କଥାଟି ମୋଟାମୋଟି ମାନେ ହେଲା ଛୋଟ ଛୋଟ ଯନ୍ତ୍ରପାତି ସାହାଯ୍ୟରେ ଜିନିଷପତ୍ର ତିଆରି ନ କରି ବଡ଼ ବଡ଼ କାରଖାନାରେ ବଡ଼ ମେସିନ୍ ସାହାଯ୍ୟରେ ସେହି ଜିନିଷକୁ ତିଆରି କରିବା । କିନ୍ତୁ କଲ କାରଖାନାରୁ ଏତେ ଜିନିଷ ତିଆରି ହୋଇ ବାହାରେ ଯେ ତାକୁ କିଣିବା ପାଇଁ ବହୁତ ଲୋକ ଦରକାର । ଅବଶ୍ୟ ବିଲାତର ଲୋକେ ନିଜ ଦେଶର ଲୁଗା କଲରେ ତିଆରି ହେଉଥିବା ଲୁଗା ବ୍ୟବହାର କରୁଥାନ୍ତି । କିନ୍ତୁ ଆହୁରି ବହୁତ ଲୁଗା ବଳି ପଡ଼ୁଥାଏ । ତେଣୁ ଇଂରେଜମାନେ ବିଲାତରୁ ଲୁଗା ଆଣି ଭାରତର ଲୋକମାନଙ୍କୁ ବିକିଲେ । ଏଥିପାଇଁ ବିଲାତର ବେପାରୀମାନଙ୍କୁ ସବୁ ପ୍ରକାର ସୁବିଧା ଦିଆଗଲା ସେତେବେଳେ ଭାରତୀୟ ବୁଣାକାରମାନେ ନିଜ ହାତ ତନ୍ତରେ ଅତି ସରୁ ଲୁଗା ବୁଣୁଥାନ୍ତି ଓ ସେଥିରୁ ଅଧିକାଂଶ ବିଦେଶରେ ବିଶେଷତଃ ବିଲାତରେ ବିକ୍ରି ହେଉଥାଏ । ଇଂରେଜମାନେ ଏହାକୁ ପସନ୍ଦ କରୁନଥାନ୍ତି । କାରଣ ଯିଏ ଭାରତୀୟ ଲୁଗା କିଣୁଥାଏ ତାର ବିଲାତି ଲୁଗା କିଣିବା ଦରକାର ପଡୁନଥାଏ କିମ୍ବା କିଣିବା ପାଇଁ ପାଖରେ ପଇସା ନଥାଏ । ତେଣୁ ସେମାନେ ହୁକୁମ ଦେଲେ, ଯିଏ ବିଦେଶକୁ ଭାରତୀୟ ଲୁଗା ପଠାଇବାକୁ ଚାହିଁବ, ତାକୁ ଆଗରୁ ଅନୁମତି ନେବାକୁ ପଡ଼ିବ । ଏ ଅନୁମତି ପାଇବା ପାଇଁ ବହୁତ ଟଙ୍କା ମଧ୍ୟ ଦେବାକୁ ପଡୁଥିଲା ଏହା ହେଉଛି ଗୋଟାଏ ପ୍ରକାର ଟିକସ, ଯାହାକୁ କହନ୍ତି ରପ୍ତାନି ଶୁଳ୍କ । ଇଂରେଜମାନେ ଚାହୁଁଥିଲେ ଯେ ଆମେ ଖାଲି କପା ଚାଷ କରି ସେମାନଙ୍କୁ ତୁଳା ଯୋଗାଇ ଦେବୁ । ଏ ତୁଳାକୁ ସେମାନେ ଅତି ଶସ୍ତାରେ କିଣି ନେଇ ବିଲାତକୁ ପଠାଉଥିଲେ । ସେହି ତୁଳାରେ ଲୁଗା ବୁଣା ହେଉଥିଲା । ସେ ଲୁଗା ଆମ ଏଠାକୁ ଆସି ଚଢ଼ା ଦରରେ ବିକ୍ରୀ ହେଉଥିଲା । ଠିକ୍ ସେହି କାରଣରୁ ଇଂରେଜମାନେ ମଧ୍ୟ ଚାହୁଁନଥିଲେ ଯେ ଭାରତୀୟ ବେପାରୀମାନେ ଭାରତରେ ଲୁଗା କଲ ବସାନ୍ତୁ ଏବଂ ଭାରତବାସୀଙ୍କ ପାଇଁ ଲୁଗା ତିଆରି କରନ୍ତୁ । ଏହିପରି ଭାବରେ ରଜା ମହାରଜା, ଚାଷୀ ମୂଲିଆ ଓ ବୁଣାକାରମାନଙ୍କ ସାଙ୍ଗକୁ ଭାରତର ବ୍ୟବସାୟୀମାନେ ମଧ୍ୟ ଅନୁଭବ କଲେ ଯେ ସେମାନେ ଗୋଟେ ଶକ୍ତ କଣ୍ଟକିଆ ଖାଞ୍ଚା ଭିତରେ ପଡ଼ି ଯାଇଛନ୍ତି ।





ଇଂରେଜମାନଙ୍କ ବିରୋଧରେ ପ୍ରଥମେ ଏକ ବଡ଼ ଧରଣର ବିଦ୍ରୋହ ହେଲା ୧୮୫୭ ମସିହାରେ । ଏହା ପଲାସୀ ଯୁଦ୍ଧର ଠିକ୍ ଶହେ ବର୍ଷ ପରର ଘଟଣା । ସିପାହୀମାନେ, ଅର୍ଥାତ୍ କମ୍ପାନୀର ସୈନ୍ୟ ବାହିନୀରେ ଯେଉଁ ଭାରତୀୟ ସୈନିକମାନେ ଥିଲେ, ସେମାନଙ୍କୁ ଅତି କମ ଦରମା ଦିଆ ଯାଉଥାଏ । ଦିନେ କେବେ ଅଫିସର ହେବେ, ଏ ଆଶା ସେମାନଙ୍କର ନ ଥାଏ । ଇଂରେଜମାନେ ସେମାନଙ୍କ ପ୍ରତି ଅତି ଖରାପ ବ୍ୟବହାର କରୁଥାନ୍ତି । ମିରଟରେ ଥିବା ଭାରତୀୟ ସିପାହୀମାନେ ପ୍ରଥମେ ଇଂରେଜଙ୍କ ବିରୋଧରେ ବିଦ୍ରୋହ ଆରମ୍ଭ କରିଦେଲେ ।

ତା'ପରେ ଏ ବିଦ୍ରୋହ ଉତ୍ତରରେ ପଞ୍ଜାବରୁ ଆରମ୍ଭ କରି ଦକ୍ଷିଣରେ ନର୍ମଦା ନଦୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ବିହାର ଠାରୁ ଆରମ୍ଭ କରି ପଶ୍ଚିମରେ ରାଜପୁତନା ପର୍ଯ୍ୟନ୍ତ ଏକ ବିରାଟ ଅଞ୍ଚଳରେ ବ୍ୟାପିଗଲା । ଏହି ବିଦ୍ରୋହରେ ସିପାହୀମାନଙ୍କ ସହିତ ସବୁ ଶ୍ରେଣୀର ଭାରତୀୟ ଯୋଗଦେଲେ । ସବୁ ଶ୍ରେଣୀ ଓ ସବୁ ସମ୍ପ୍ରଦାୟରୁ ଏ ବିଦ୍ରୋହର ନେତାମାନେ ବାହାରିଲେ ।

ସମସ୍ତେ ଶେଷ ମୋଗଲ ବାଦଶାହ ବାହାଦୁର ଶାହଙ୍କୁ ସେମାନଙ୍କର ସମ୍ରାଟ ବୋଲି ଗ୍ରହଣ କଲେ। ସେମାନଙ୍କ ମଧ୍ୟରୁ ନାନା ସାହେବ କାନପୁର ଠାରେ ବିଦ୍ରୋହର ନେତୃତ୍ୱ ନେଲେ। ତାନ୍ତିଆ ଟୋପି ଦୁଇ ବର୍ଷ ଧରି ଲୁଚି ଛପି ଅତି ଚତୁରତା ଓ ସାହସର ସହିତ ଇଂରେଜମାନଙ୍କ ସଙ୍ଗେ ଯୁଦ୍ଧ ଚଳାଇଲେ। ବିହାରରେ ବିଦ୍ରୋହ ପରିଚାଳନା କଲେ ଅଶୀ ବର୍ଷର ବୃଦ୍ଧ କୁନୱାର ସିଂହ। ଏଲାହାବାଦର ଜଣେ ସ୍କୁଲ ଶିକ୍ଷକ ଲିଆକତ୍ ଅଲି ଓ ଫୈଜାବାଦର ଜଣେ ମୌଲବୀ ଅହମ୍ମଦୁଲ୍ଲା ଶାହ ମଧ୍ୟ ବିଦ୍ରୋହରେ ଝାସ ଦେଲେ ଓ ଲୋକମାନଙ୍କର ନେତୃତ୍ୱ ନେଲେ। ନାରୀ ନେତ୍ରୀମାନେ ମଧ୍ୟ ବାହାରି ପଡ଼ିଲେ। ଝାନ୍ସୀର ରାଣୀ ଲକ୍ଷ୍ମୀବାଈ ଆତ୍ମ ସମର୍ପଣ ନ କରି ଇଂରେଜମାନଙ୍କ ସାଥିରେ ଯୁଦ୍ଧ କଲେ ଓ ଶେଷରେ ଯୁଦ୍ଧ ଭୂମିରେ ଢଳି ପଡ଼ିଲେ। ଇଂରେଜମାନଙ୍କ ହାତରୁ ଲକ୍ଷ୍ନୌକୁ ରକ୍ଷା କରିବା ପାଇଁ ନିଜର ସୈନ୍ୟମାନଙ୍କୁ ଉତ୍ସାହିତ କରିବା ଲାଗି ଯୁଦ୍ଧ ଭୂଇଁକୁ ଧାଇଁ ଆସିଥିଲେ ଅବଧର ଯୁବତୀ ବେଗମ୍ ହଜରତ ମହଲ।

ଏ ବିଦ୍ରୋହକୁ ଅତି ନିଷ୍ଠୁର ଭାବରେ ଦମନ କରାଗଲା। ବାହାଦୁର ଶାହଙ୍କୁ ବର୍ମା ଦେଶାନ୍ତର କରି ଦିଆଗଲା। ସେଠାରେ ସେ ବନ୍ଦୀ ହୋଇ ରହିଲେ ଓ ତାଙ୍କ ପୁଅମାନଙ୍କୁ ଗୁଳିକରି ମାରି ଦିଆଗଲା। ଶହ ଶହ ଲୋକଙ୍କୁ ତୋପ ମୁହଁରେ ବାନ୍ଧି ଉଡାଇ ଦିଆଗଲା। ହଜାର ହଜାର ଲୋକ ଫାସୀଖୁଣ୍ଟରେ ଝୁଲିଲେ। ଗାଆଁକୁ ଗାଆଁ ନିଆଁ ଲଗାଇ ପୁରାପୁରି ଧ୍ୱଂସ କରି ଦିଆଗଲା। କିନ୍ତୁ ଏ ବିଦ୍ରୋହରେ ବିଲାତର ଲୋକେ ମଧ୍ୟ ଥରହର ହୋଇ ଯାଇଥିଲେ। ସେମାନେ ସ୍ଥିର କଲେ ଭାରତର ଶାସନ ଭାର ଗୋଟିଏ ବଣିକ କମ୍ପାନୀ ହାତରେ ଛାଡ଼ି ଦେବା ଉଚିତ ହେବ ନାହିଁ। ଇଂରେଜ ସରକାର ନିଜେ ଶାସନ ଦାୟିତ୍ୱ ହାତକୁ ନେଲେ। ସେ ଇଂଲଣ୍ଡର ରଜା ବା ରାଣୀଙ୍କ ପ୍ରତିନିଧିଙ୍କୁ ପଠାଇ ଶାସନ ଚଳାଇଲେ। ତାଙ୍କୁ କୁହାଯାଉଥିଲା ଭାଇସରାୟ ବା ରାଜ ପ୍ରତିନିଧି।

କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନୀ ହାତରୁ ଶାସନ ଭାର ଇଂରେଜ ସରକାର ନେଲେ ମଧ୍ୟ ଅବସ୍ଥା ବଦଳିଲା ନାହିଁ। ଦଳେ ବଣିକଙ୍କ ଜାଗାରେ ଇଂରେଜ ସରକାରଙ୍କର ଦଳେ ଅଫିସର ଆସି ଶାସନ କାମ ଚଳାଇଲେ।



ସେମାନେ ନିଜ ଦରକାରୀ ଜିନିଷ ଲୋକଙ୍କଠାରୁ ଅସୁଲ କରିବା ଦିଗରେ ଖୁବ୍ ଧୁରନ୍ଧର ଥିଲେ। ଯେପରି ନିଜ ଓ ନିଜ ଦେଶର ଲାଭ ହେବ, ତାକୁ ହିଁ ଆଖି ଆଗରେ ରଖି ଶାସନ ଚଳାଇଲେ। ସେମାନେ ନିଜକୁ ଖୁବ୍ ବଡ ବୋଲି ଭାବୁଥିଲେ ଓ ଭାରତବାସୀଙ୍କୁ ଅତି ହେୟ ଜ୍ଞାନ କରୁଥିଲେ। ସେମାନେ ଚାହୁଁଥିଲେ ଯେ ଭାରତୀୟମାନେ ସ୍ୱାଧୀନତା କଥା ଚିନ୍ତା ମଧ୍ୟ ନ କରନ୍ତୁ। ଲୋକଙ୍କର ସେ ପ୍ରକାର ଭାବନା ଦବାଇ ଦେବା ପାଇଁ ସେମାନେ ଅତି ଧୂର୍ତ୍ତ ଓ ନିଷ୍ଠୁର ଉପାୟମାନ ଧରିଲେ। କିନ୍ତୁ ଫଳ ଓଲଟା ହେଲା। ଇଂରେଜମାନେ ଲୋକଙ୍କୁ ଯେତେ ଦୃଢ଼ ଭାବରେ ଶାସନ କରିବାକୁ ଚାହିଁଲେ, ଲୋକେ ସ୍ୱାଧୀନ ହେବା ପାଇଁ ସେତିକି ବ୍ୟସ୍ତ ହେଲେ। ଚାରିଆଡେ ଦେଶବାସୀଙ୍କ ମନରେ ସ୍ୱାଧୀନତା ପାଇଁ ପ୍ରବଳ ଆଗ୍ରହ ଜାଗି ଉଠିଲା। ସ୍ୱାଧୀନ ହେବା ପାଇଁ ବିଭିନ୍ନ ଲୋକେ ବିଭିନ୍ନ ଉପାୟରେ ଲାଗିଗଲେ।

ରାଜା ରାମମୋହନ ରାୟଙ୍କ ଭଳି ସଂସ୍କାରକମାନେ ଭାବୁଥିଲେ, ଆମେ ଯଦି ମୁକ୍ତି ଚାହୁଁ, ତେବେ ଆମର ପ୍ରମାଣ କରିଦେବା ଉଚିତ ଯେ ଆମେ ଏଥିପାଇଁ ହକଦାର। ଭାରତୀୟମାନେ ନିଜ ନିଜର ଖରାପ ପ୍ରଥା ଓ ଅଭ୍ୟାସ ଛାଡ଼ି ଦିଅନ୍ତୁ ବୋଲି ସେ ପ୍ରଚାର ଚଳାଇଲେ। ସେ ଚାହୁଁଥିଲେ, ପ୍ରତ୍ୟେକ ଦେଶବାସୀ ବିଶେଷ କରି ନାରୀମାନେ ପାଠପଢି ଶିକ୍ଷିତ ହୁଅନ୍ତୁ। ବିବେକାନନ୍ଦ ମଧ୍ୟ ଠିକ୍ ସେହି ଭଳି ଚିନ୍ତା କରୁଥିଲେ। ସେ କହୁଥିଲେ ଯେ ଭାରତବାସୀମାନେ ତାଙ୍କ ନିଜ ଭାଇମାନଙ୍କ ପ୍ରତି ଖରାପ ବ୍ୟବହାର କରି ପାପ କରୁଛନ୍ତି। ଆମ ଲୋକମାନେ ନିଜକୁ ଅତି ଧାର୍ମିକ ବୋଲି ମନେ କରନ୍ତି। କିନ୍ତୁ ବିବେକାନନ୍ଦ କହିଲେ, ଯାହାର ସାହସ ଓ ଶକ୍ତି ନାହିଁ ସେ କେବେ ପ୍ରକୃତ ଧାର୍ମିକ ହୋଇ ପାରିବ ନାହିଁ।

ଲେଖକମାନେ ନିଜର ନାଟକ, ଉପନ୍ୟାସ, କବିତା ଓ ସଙ୍ଗୀତ ଜରିଆରେ ଇଂରେଜମାନଙ୍କ ଦମନ ଲୀଳାର ବିରୋଧ କଲେ। ୧୮୬୦ରେ ଦୀନବନ୍ଧୁ ମିତ୍ର 'ନୀଲ ଦର୍ପଣ' ବୋଲି ଗୋଟିଏ ବଙ୍ଗଳା ନାଟକ ପ୍ରକାଶ କରିଥିଲେ। ଇଂରେଜମାନେ କିପରି ନୀଳଚାଷ କରିବା ପାଇଁ ଓ ତାକୁ ଶସ୍ତାରେ ଇଂରେଜ ବେପାରୀଙ୍କୁ ବିକିବା ପାଇଁ ଚାଷୀମାନଙ୍କୁ ବାଧ କରୁଛନ୍ତି ଏବଂ ଚାଷୀମାନେ ରାଜି ନହେଲେ କିପରି ଅତ୍ୟାଚାର ଚଳାଇଛନ୍ତି ନାଟକରେ ସେହି କଥା ହିଁ ଥିଲା। ଏଥିପାଇଁ ଇଂରେଜମାନଙ୍କର ରାଗର ସୀମା ରହିଲା ନାହିଁ।



"ବନ୍ଦେ ମାତରଂ" ସଂଗୀତ ଆମେ ସମସ୍ତେ ଜାଣୁ । ବଙ୍କିମ ଚନ୍ଦ୍ରଙ୍କ ଉପନ୍ୟାସ "ଆନନ୍ଦ ମଠ"ରୁ ଏହି ମୁକ୍ତି ସଂଗୀତଟି ଆସିଛି । ରବୀନ୍ଦ୍ର ନାଥଙ୍କ "ଜନ ଗଣ ମନ" ସଂଗୀତ ଆମର ଜାତୀୟ ସଂଗୀତ । ଭାରତବାସୀଙ୍କ ଭିତରେ ଏକତା ପାଇଁ ଏ ସଂଗୀତ ଡାକ ଦେଉଛି । ସେହିପରି ସୁବ୍ରମନିଆ ଭାରତୀ ତାମିଲ ଭାଷାରେ ଦେଶ ପ୍ରେମର ସଂଗୀତମାନ ଲେଖି ତାମିଲନାଡୁର ଲୋକଙ୍କୁ ଉତାଲ ଦେଇଛନ୍ତି ।

ବିଭିନ୍ନ ଭାରତୀୟ ଭାଷାରେ ଖବର କାଗଜମାନ ପ୍ରକାଶ ପାଇ ଇଂରେଜଙ୍କ ଅତ୍ୟାଚାରର ଘୋର ବିରୋଧ କଲେ । ଫଳରେ ୧୮୭୪ରେ ଇଂରେଜ ସରକାର ହୁକୁମ ଜାରି କଲେ ଯେ କୌଣସି ଭାରତୀୟ ଭାଷାରେ ଖବର କାଗଜ ଛପା ହୋଇ ପାରିବ ନାହିଁ । ଅବଶ୍ୟ ଏହି ଆଦେଶକୁ ସେ ପରେ ଉଠାଇନେଲେ । କିନ୍ତୁ ଯେଉଁ ଖବରକାଗଜର ଲେଖା ସରକାରଙ୍କର ପସନ୍ଦ ନ ହେଲା, ତାର ସମ୍ପାଦକଙ୍କୁ ଅତି କଠୋର ଶାସ୍ତି ଦିଆଗଲା । ସୁରେନ୍ଦ୍ର ନାଥ ବାନାର୍ଜୀ ଖବର କାଗଜରେ ଜଣେ ଇଂରେଜ ବିଚାରପତିଙ୍କ ଅନ୍ୟାୟ ବିଚାରର ସମାଲୋଚନା କରି ଲେଖିବାରୁ ତାଙ୍କୁ ଜେଲଦଣ୍ଡ ଦିଆଗଲା ।

ଏମିତି ବର୍ଷ ପରେ ବର୍ଷ ଗଡ଼ି ଚାଲିଲା । ବହୁ ରକମର ଲୋକ ବିଭିନ୍ନ ବାଟରେ ସ୍ୱାଧୀନତା ଆନ୍ଦୋଳନକୁ ଅଧିକ ଶକ୍ତିଶାଳୀ କରିବାରେ ଲାଗି ପଡ଼ିଥାନ୍ତି ।

କିନ୍ତୁ ଯେତେବେଳେ ରାଜନୈତିକ ଆନ୍ଦୋଳନ ଆରମ୍ଭ ହେଲା, ଏହି ଲୋକମାନେ ସମସ୍ତେ ଏକାଠି ହୋଇଗଲେ । ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ଗଢ଼ାଯିବା ପରେ ଏହା ସମ୍ଭବ ହେଲା । କଂଗ୍ରେସର ପ୍ରଥମ ବୈଠକ ବସିଲା ବମ୍ବେରେ । ଭାରତର ଚାରିଆଡ଼ୁ ନେତାମାନେ ଆସିଲେ । ସୟଦ୍ ଓ ତୟବ୍‌ଜୀଙ୍କ ଭଳି ମୁସଲମାନ ନେତା, ଦାଦାଭାଇ ନାଓରୋଜୀ ଓ ଫିରୋଜ ଶାହ ମେହେଟାଙ୍କ ଭଳି ପାର୍ସୀ ନେତାମାନେ ହିନ୍ଦୁ ନେତାମାନଙ୍କ ସାଥିରେ ମିଶି କଂଗ୍ରେସରେ ଯୋଗଦେଲେ । ବିଦେଶୀ ଶାସନ କବଳରୁ ଦେଶକୁ ମୁକ୍ତ କରିବାପାଇଁ ଆନ୍ଦୋଳନ ଆରମ୍ଭ ହୋଇଗଲା ଓ କ୍ରମେ କ୍ରମେ ଏହା ବଡ଼ ଆକାର ଧାରଣ କଲା । ଗୋଖଲେ ଓ ସୁରେନ୍ଦ୍ରନାଥ ବାନାର୍ଜୀ ଆସି କଂଗ୍ରେସରେ ଯୋଗ ଦେଲେ । ଭାରତବାସୀଙ୍କୁ ସଚେତନ କରାଇବା ପାଇଁ ସେମାନେ ବହୁତ ପରିଶ୍ରମ କଲେ । ପ୍ରଥମେ ପ୍ରଥମେ ଅର୍ଥାତ୍ ୧୯୦୫ ମସିହା ପର୍ଯ୍ୟନ୍ତ କଂଗ୍ରେସ ଇଂରେଜମାନଙ୍କୁ ଖୋଲାଖୋଲି ବିରୋଧ କଲାନାହିଁ । ଇଂରେଜ ଶାସନରେ ଭାରତର ଲୋକଙ୍କ ଦୁଃଖ ଦୁର୍ଦ୍ଦଶା କଥା ଆଗ ଉଠାଇଲା । କଂଗ୍ରେସ ଦାବୀକଲା, ଦେଶରେ ଶାସନ ଠିକ୍ ଭାବେ ଚାଲୁ । ତେଣୁ କେତେକ ଲୋକ ଭାବିଲେ, କଂଗ୍ରେସର ନେତାମାନେ ବଡ଼ ଦୁର୍ବଳ ଲୋକ । କିନ୍ତୁ ସେମାନଙ୍କର ଏ ଧାରଣା ଭୁଲ । କଂଗ୍ରେସ ନେତାମାନଙ୍କର ଦୃଢ଼ ଧାରଣା ଥିଲା ଯେ ଇଂରେଜମାନଙ୍କୁ ବଦଳାଇ ଦେବ । ଇଂରେଜମାନେ ଯେଉଁ ସବୁ ଭୁଲ କାମ କରୁଛନ୍ତି, ସେମାନେ ତାହା ଅତି ସାହସରେ ସମାଲୋଚନା କଲେ । କଂଗ୍ରେସର ପ୍ରଥମ ବୈଠକରେ ଅନେକ ନେତା ଖବର କାଗଜ ଉପରେ ହୋଇଥିବା କଟକଣାକୁ ଘୋର ସମାଲୋଚନା କଲେ । ଅନେକ ସମୟରେ ଦେଶରେ ଦୁର୍ଭିକ୍ଷ ପଡ଼ି ଲକ୍ଷ ଲକ୍ଷ ଲୋକ ମରୁଥାନ୍ତି । ତା'ର କୌଣସି ପ୍ରତିକାର ହେଉ ନଥାଏ । ତେଣୁ ସରକାରଙ୍କ ଉପରେ ରାଗିଯାଇ ନେତାମାନେ ଭାଷଣ ଦେଲେ । ସେମାନେ ଦାବୀ କଲେ, ପୋଲିସଙ୍କ ପାଇଁ କମ ଟଙ୍କା ଖର୍ଚ୍ଚ ହୋଇ ସ୍କୁଲ ଓ ଡାକ୍ତରଖାନା ସକାଶେ ବେଶୀ ଖର୍ଚ୍ଚ ହେଉ । ମ୍ୟୁନିସିପାଲିଟିର ସଭ୍ୟମାନେ ସରକାରଙ୍କଦ୍ୱାରା ବଛା ନ ହୋଇ ଲୋକଙ୍କ ଦ୍ୱାରା ବଛା ହୁଅନ୍ତୁ । ଲୋକଙ୍କଠାରୁ ଅସୁଲ ହେଉଥିବା ଅଜସ୍ର ଖଜଣା ପ୍ରକୃତରେ କିପରି ଖର୍ଚ୍ଚ ହେଉଛି, ତାହା ସରକାରଙ୍କ ବ୍ୟତୀତ ଅନ୍ୟ କେହି ଅନୁସନ୍ଧାନ କରିବା ଉଚିତ । ଇଂରେଜମାନେ ଦେଶର ସମ୍ପଦ ଲୁଟି ନେବା ଫଳରେ ଭାରତର ଲୋକମାନେ ଯେ ଦିନକୁ ଦିନ ଅଧିକ ଗରିବ ହୋଇ ଯାଉଛନ୍ତି, ଏହା ପ୍ରମାଣ କରିବା ପାଇଁ ଦାଦାଭାଇ ନାଓରୋଜୀ ସାରା ଜୀବନ ଲାଗି ପଡ଼ିଲେ । ବିଲାତ କିପରି ଭାରତକୁ ଧ୍ୱଂସ ଆଡ଼କୁ ଟାଣି ନେଉଛି, ଏହା ତାଙ୍କର ଲେଖା ଓ ବକ୍ତୃତାରୁ କେବଳ ଭାରତ ନୁହେଁ ବିଲାତର ଲୋକମାନେ ମଧ୍ୟ ବୁଝିଗଲେ ।

୧୯୦୫ ପରେ ସ୍ୱାଧୀନତା ପାଇବାର ପ୍ରକୃତ ବାଟ କ'ଣ, ଏ ବିଷୟରେ କଂଗ୍ରେସ ନେତାଙ୍କ ମଧ୍ୟରେ ମତ ମେଳ ଖାଇଲା ନାହିଁ । ତିଳକ, ବିପିନଚନ୍ଦ୍ର ପାଲ ଓ ଲଜପତ୍ ରାୟ ପ୍ରମୁଖ କହିଲେ ଇଂରେଜ ସରକାରଙ୍କ ପାଖରେ ଆପତ୍ତି ଅଭିଯୋଗ କରି ଲାଭ ନାହିଁ । ଆହୁରି କଡ଼ା ଉପାୟ ଖୋଜିବାକୁ ପଡ଼ିବ । ୧୮୮୯ ମସିହା ବେଳକୁ 'କେଶରୀ' ନାମକ ଏକ ମରାଠୀ ପତ୍ରିକାରେ ତିଳକ ଏହି ମର୍ମରେ ଲେଖାଲେଖି ଆରମ୍ଭ କରି ଦେଇଥାନ୍ତି ।

୧୮୯୭ରେ ଭଲ ଫସଲ ହେଲା ନାହିଁ । ତେଣୁ ସରକାରଙ୍କୁ ଟିକସ ନଦେବା ପାଇଁ ତିଳକ କୃଷୀମାନଙ୍କୁ ମତାଇଲେ । ତେଣୁ ଇଂରେଜ ସରକାର ତାଙ୍କୁ ଗିରଫ କରି ନେଇ ଅଠର ମାସ କାଳ ଜେଲଖାନାରେ ରଖିଲେ । ଥରେ ସେ କହିଲେ, "ସ୍ୱରାଜ ମୋର ଜନ୍ମଗତ ଅଧିକାର" । ସ୍ୱରାଜ ଅର୍ଥ ସ୍ୱାଧୀନତା । କିନ୍ତୁ ସ୍ୱା' ନ କହି ସେ ଯଦି ସରକାରଙ୍କ କାର୍ଯ୍ୟର ସମାଲୋଚନା କରିଥାନ୍ତେ, ତାହାହେଲେ ନରମପନ୍ଥୀ ନେତାମାନେ ବେଶୀ ଖୁସି ହୋଇଥାନ୍ତେ ।

ଏହି ଶତାବ୍ଦୀର ଆରମ୍ଭ ବେଳକୁ ଭାରତର ସ୍ୱାଧୀନତା ଆନ୍ଦୋଳନ ଜୋରସୋରରେ ଆରମ୍ଭ ହୋଇଥାଏ । ଅଧିକାଂଶ ଶିକ୍ଷିତ ଲୋକଙ୍କର ଦୃଢ଼ ଧାରଣା ହୋଇଥାଏ ଯେ ଇଂରେଜ ଶାସନରେ ଭାରତ କିମ୍ବା ଭାରତୀୟମାନଙ୍କର କୌଣସି ମଙ୍ଗଳ ହେବନାହିଁ ।

ଠିକ୍ ସେତିକି ବେଳକୁ ଲର୍ଡ କର୍ଜନ ଭାରତକୁ ଭାଇସରାୟ ହୋଇ ଆସିଲେ । ସେ ବଡ଼ ଗର୍ବୀ ଓ ଜିଦ୍ଦତ ଲୋକ । ଭାରତବାସୀମାନେ ଯେ ଅନ୍ୟମାନଙ୍କ ପରି ନିଜ ଦେଶକୁ ଶାସନ କରିବା ପାଇଁ ଯୋଗ୍ୟ, ଏ କଥା ସେ ବୁଝିବାକୁ ନାରାଜ । ବାସ୍ତବରେ ଭାରତୀୟ ଜାତୀୟ କଂଗ୍ରେସ ଓ ସ୍ୱାଧୀନତା ଆନ୍ଦୋଳନକୁ ମୂଳପୋଛ କରିଦେବା ପାଇଁ ସେ ନାନା ପ୍ରକାର ଚେଷ୍ଟାକଲେ । ସେଥି ମଧ୍ୟରୁ ଗୋଟିଏ ହେଲା ବଙ୍ଗ ପ୍ରଦେଶକୁ ହିନ୍ଦୁ ଓ ମୁସଲମାନଙ୍କ ଭିତରେ ଦୁଇ ଭାଗ କରି ବାଣ୍ଟି ଦେବା । ଗୋଟିଏ ପ୍ରଦେଶରେ ସେମାନଙ୍କୁ ଏକାଠି ରଖିବା ପାଇଁ ସେ ଚାହୁଁ ନଥିଲେ । ତେଣୁ ବିରାଟ ବଙ୍ଗ ପ୍ରଦେଶକୁ ସେ ଦୁଇ ଭାଗ କରି ଦେଲେ । ଏହାକୁ କହନ୍ତି 'ବଙ୍ଗ-ଭଙ୍ଗ' । ସରକାରଙ୍କର ଏହି କାମକୁ କେବଳ ବଙ୍ଗ ନୁହେଁ, ସାରା ଦେଶର ଲୋକେ ବିରୋଧ କଲେ । ସମସ୍ତେ ସରକାରଙ୍କୁ କହିଲେ ଯେ କେହି 'ବଙ୍ଗ-ଭଙ୍ଗ'ରେ ରାଜି ନୁହନ୍ତି । ଇଂରେଜ ସରକାର ଲୋକଙ୍କୁ ଭାଗ ଭାଗ କରି ଦୁର୍ବଳ କରି ଦେବାକୁ ବସିଲେ । କିନ୍ତୁ ଫଳରେ ଲୋକେ ଅଧିକ ଏକଜୁଟ ହେଲେ ଓ ସେମାନଙ୍କ ଶକ୍ତି ବଢ଼ିଲା । ତିଳକ, ଅରବିନ୍ଦ ଘୋଷ, ବିପିନ ଚନ୍ଦ୍ର ପାଲ, ଲାଲ ଲଜପତ୍‌ରାୟ ଅଶ୍ୱିନୀ କୁମାର ଦତ୍ତ ପ୍ରମୁଖ ଚରମପନ୍ଥୀ ନେତାମାନେ ଏହି ଆନ୍ଦୋଳନର ନେତା ଥାଆନ୍ତି । ବିପ୍ଳବୀ ସାଜି ଓ ବିଦ୍ରୋହ କରି ସରକାରଙ୍କୁ ଗାଦିରୁ ତଡ଼ିବା ପାଇଁ ସେ ଲୋକମାନଙ୍କୁ ମତାଇଲେ । ୧୯୦୭ରେ ଇଂରେଜ ସରକାର ଲାଲ ଲଜପତ୍ ରାୟଙ୍କୁ ଗିରଫକରି ବର୍ମାର ମାଣ୍ଡାଲେ ଜେଲକୁ ପଠାଇଦେଲେ ।

ଲୋକଙ୍କର ବହୁ ବିରୋଧ ସତ୍ତ୍ୱେ ବଙ୍ଗ ଭାଗ ଭାଗ ହୋଇଗଲା । କୌଣସି ବିପ୍ଳବ ହେଲା ନାହିଁ । ଯେଉଁଠି ଟିକିଏ ବିରୋଧର ଚିହ୍ନ ଦେଖିଲେ ତାକୁ ସବୁ ଶକ୍ତି ଖଟାଇ ଇଂରେଜ ସରକାର ଦମନ କଲେ । କିନ୍ତୁ ସେତିକିରେ କାହାଣୀ ଶେଷ ହେଲା ନାହିଁ । ଚାରି ବର୍ଷ ପରେ ବଙ୍ଗ ଭଙ୍ଗ ଆଇନ ଉଠାଇ ନିଆଗଲା ।

ସେତେବେଳକୁ ଅନେକ ଲୋକ ଭାବୁଥାନ୍ତି ଯେ ହିଂସାର ଜବାବ ହିଂସାରେ ହିଁ ଦେବାକୁ ପଡ଼ିବ । ଏଥିରେ ଆଶ୍ଚର୍ଯ୍ୟ ହେବାର ବା କଣ ଅଛି ? ଯେଉଁମାନେ ଏଭଳି ଚିନ୍ତାକଲେ, ତାଙ୍କ ଭିତରୁ ଅନେକେ ବିପ୍ଳବୀ ହୋଇ ବାହାରିଲେ । କେତେଜଣ ଅତ୍ୟାଚାରୀ ଇଂରେଜ ଅଫିସରଙ୍କୁ ହତ୍ୟାକରାଗଲା ।

୧୯୦୮ରେ ଖୁଦିରାମ ବୋଷ ଜଣକୁ ହତ୍ୟା କରିବାପାଇଁ ଚେଷ୍ଟାକରି ଫାଶୀ ପାଇଲେ । ସେତେବେଳେ ତାଙ୍କୁ ମାତ୍ର ପନ୍ଦର ବର୍ଷ ବୟସ । ଆଉ କେତେକଣ ବିପ୍ଲବୀ ଗୁପ୍ତଭାବରେ ବୋମା ଓ ଅନ୍ୟାନ୍ୟ ଅସ୍ତ୍ର ତିଆରି କରିବାକୁ ଚେଷ୍ଟା ଚଳାଇଲେ । ସେଥିରୁ କେତେଜଣ କଲିକତାର ମାଣିକତଲରେ ଧରା ପଡ଼ିଥିଲେ ଓ ଷଡ଼ଯନ୍ତ୍ର ଅଭିଯୋଗରେ ସେମାନଙ୍କ ବିଚାର ହୋଇଥିଲା ।

ଏହି ବିପ୍ଳବୀଙ୍କ ଆନ୍ଦୋଳନ ସେପରି ବଡ଼ ଆକାର ଧରି ପାରିଲାନାହିଁ କି ସେପରି ଶକ୍ତିଶାଳୀ ହେଲାନାହିଁ । କିନ୍ତୁ ବହୁବର୍ଷ ଧରି ଏହା ଚାଲିଥିଲା । ବିପ୍ଳବୀଙ୍କ ସଂଖ୍ୟା ଅଳ୍ପ ହେଲେ କ'ଣହେବ, ସେମାନେ ବଡ଼ ସାହାସୀ ଥିଲେ । ଲୋକେ ସେମାନଙ୍କ ସାଥିରେ ଯୋଗ ଦେଲେନାହିଁ ମାତ୍ର ସେମାନଙ୍କ ସାହସ ଓ ତ୍ୟାଗକୁ ଖୁବ୍ ପ୍ରଶଂସା କରୁଥିଲେ । ତୁମେ ଭଗତ ସିଂଙ୍କ ନାଆଁ ଶୁଣିଥିବ । ସେ ଓ ତାଙ୍କ ସାଥି ସୁଖ୍‌ଦେବ ଓ ରାଜଗୁରୁ ଜନର ବୀରତ୍ୱ ଯୋଗୁଁ ପଞ୍ଜାବର ଲୋକମାନଙ୍କ ଭିତରେ ନୂଆ ଜାଗରଣ ସୃଷ୍ଟି କଲେ । ସେମାନଙ୍କୁ ଗିରଫ କରି ଫାଶୀ ଦିଆଗଲା ।

ଆଉ କେତେଜଣ ଭାରତୀୟ ବିପ୍ଳବୀ ବିଦେଶକୁ ପଳାଇଗଲେ ଓ ସେଠାରେ ରହି ଭାରତର ସ୍ୱାଧୀନତା ପାଇଁ ଆନ୍ଦୋଳନ ଚଳାଇଲେ । ଭାରତରେ ଇଂରେଜ ସରକାର କିପରି ଅନ୍ୟାୟ ଭାବରେ ଶାସନ ଚଳାଉ-ଛନ୍ତି, ତାହା ୟୁରୋପ ଓ ଆମେରିକାର ଲୋକଙ୍କୁ ବୁଝାଇବାଥିଲା ସେମାନଙ୍କ କାମ । ସେମାନେ ଭାରତକୁ ସ୍ୱାଧୀନ କରିବାପାଇଁ ସେହିସବୁ ଦେଶରୁ ସାହାଯ୍ୟ ପାଇବାପାଇଁ ଚେଷ୍ଟା ଚଳାଉଥିଲେ । ସେମାନଙ୍କ ମଧ୍ୟରୁ ଜଣେ ହେଲେ ମାଡାମ କାମା । ସେ ଜେନେଭାରେ ରହି ସେଠାରେ ୧୯୦୯ରୁ "ବନ୍ଦେ ମାତରମ୍" ବୋଲି ଗୋଟିଏ ପତ୍ରିକା ପ୍ରକାଶ କଲେ । ବୀରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ ବର୍ଲିନରେ ଭାରତୀୟ ସ୍ୱାଧୀନତା ସମିତି ଗଠନ କରିଥିଲେ । ରାଜା ମହେନ୍ଦ୍ର ପ୍ରତାପ, ମୌଲନା ବରକତୁଲ୍ଲା ଓ ମୌଲନା ଅବେଦୁଲ୍ଲା କାବୁଲକୁ ଯାଇ ସେଠାରେ ଅସ୍ଥାୟୀ ଭାରତ ସରକାର ଗଢ଼ିଥିଲେ ।

ଆମେରିକାକୁ ପଳାଇଯାଇ ବସବାସ କରୁଥିବା ପଞ୍ଜାବୀମାନେ ସେଠାରେ ଗଦର ପାର୍ଟି ନାମରେ ଗୋଟିଏ ଦଳ ଗଢ଼ିଥିଲେ ଏବଂ ଭାରତରେ ଚାଲିଥିବା ବିପ୍ଳବୀମାନଙ୍କ ଆନ୍ଦୋଳନକୁ ସାହାଯ୍ୟ କରିବାପାଇଁ ଚେଷ୍ଟା କରିଥିଲେ । 'ଗଦର' ଅର୍ଥହେଉଛି 'ବିଦ୍ରୋହ' । ଭାରତର ବିପ୍ଳବୀମାନଙ୍କପାଇଁ ବିଦେଶରୁ ବନ୍ଧୁକ, ପିସ୍ତଲ ଓ ହାତ ହତିଆର ଆଣିବାପାଇଁ ସାଭରକର ଓ ଯତିନ୍ ମୁଖାର୍ଜିଙ୍କ ଭଳି ଅନେକ ଲୋକ ଚେଷ୍ଟା ଚଳାଇଥିଲେ । ଏସବୁ ଉଦ୍ୟମ ୧୯୧୪-୧୮ ମଧ୍ୟରେ ପ୍ରଥମ ମହାସମର ବେଳେ ଚାଲିଥିଲା । ଦ୍ୱିତୀୟ ମହାସମର (୧୯୩୯ ରୁ ୪୫) ବେଳେ ନେତାଜୀ ସୁଭାସ ବୋଷ ଗିରଫ ହୋଇ ଜେଲରେ ଥିଲେ । ୧୯୪୧ରେ ସେ ଜେଲରୁ ଖସି ପଳାଇଲେ । ପ୍ରଥମେ ଜର୍ମାନୀ ଯାଇ ସେଠାରୁ ଜାପାନ ଗଲେ । ସେତେବେଳେ ଭାରତୀୟ ସୈନ୍ୟମାନଙ୍କୁ ଯୁଦ୍ଧକରିବା ପାଇଁ ବର୍ମା, ମାଳୟ ଓ ସିଙ୍ଗାପୁରକୁ ପଠାଯାଉଥାଏ । ଏହିସବୁ ଦେଶକୁ ଜାପାନ ଦଖଲ କରନେଲା । ଅନେକ ଭାରତୀୟ ସୈନ୍ୟ ଜାପାନ ହାତରେ ବନ୍ଦୀ ହେଲେ ଓ ଅନେକ ସୈନ୍ୟଙ୍କୁ ଇଂରେଜ ସରକାର ଛାଡ଼ି ପଳାଇଆସିଲେ । ସେମାନଙ୍କୁ ନେଇ ନେତାଜୀ ଭାରତୀୟ ଜାତୀୟ ସୈନ୍ୟବାହିନୀ ଗଢ଼ିଲେ । ସେ ଆଶା କରିଥିଲେ ଯେ ଏହି ସୈନ୍ୟବାହିନୀକୁ ନେଇ ଭାରତକୁ ମୁକ୍ତ କରିବେ । କିନ୍ତୁ ହଠାତ୍ ଯୁଦ୍ଧ ବନ୍ଦ ହୋଇଗଲା ଓ ନେତାଜୀଙ୍କର ମୃତ୍ୟୁ ହେଲା । ତେଣୁ ତାଙ୍କ ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ଆସ, ଆମେ ପୁଣି ଆମ କାହାଣୀକୁ ଫେରିଯିବା । ବଙ୍ଗ ଭଙ୍ଗ ପରେ ପରେ ଇଂରେଜ ସରକାର



ବଡ଼ ଅସୁବିଧାରେ ପଡ଼ିଥାନ୍ତି । କେବଳ ଆଇନ ବଳରେ ଭାରତକୁ ଶାସନ କରିବା ସମ୍ଭବ ନୁହେଁବୋଲି ସେମାନଙ୍କୁ ଜଣାଥାଏ । ଲୋକଙ୍କ ଭିତରେ ବେଳକୁବେଳ ଅଧିକ ଅସନ୍ତୋଷ ଓ ରାଗ ବଢୁଥାଏ । ତେଣୁ ଇଂରେଜ ସରକାର ସ୍ଥିରକଲେ ଲୋକମାନଙ୍କୁ ଅଳ୍ପ କିଛି ସ୍ୱାଧୀନତା ଦେବେ । ସେମାନେ ଶାସନରେ କେତେକ ଅଦଳ ବଦଳ କଲେ ।

ସେତେବେଳେ ବିଲାତରେ ଇଂରେଜ ସରକାରଙ୍କର ଭାରତକଥା ବୁଝାସୁଝା କରିବା ପାଇଁ ମନ୍ତ୍ରୀଥାଆନ୍ତି ଜନମୋର୍ଲେ । ଭାରତର ଭାଇସରାୟ ବା ରାଜପ୍ରତିନିଧି ଥାଆନ୍ତି ମିଣ୍ଟୋ । ତେଣୁ ଶାସନରେ ଯେଉଁ କେତେକ ଅଦଳ ବଦଳ ହେଲା ତାକୁ କୁହାଗଲା "୧୯୦୯ର ମୋର୍ଲେ-ମିଣ୍ଟୋ ଶାସନ ସଂସ୍କାର" । ଏହା ପ୍ରକୃତରେ କୌଣସି ବିଶେଷ ଅଦଳ ବଦଳ ନୁହେଁ । ଏହା ଫଳରେ ଶାସନ ସଭାମାନଙ୍କୁ ବେଶୀ ଭାରତୀୟଙ୍କୁ ନିଆଗଲା । କିନ୍ତୁ ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣଙ୍କୁ ଲୋକମାନେ ବାଛିଲେ । ସେମାନଙ୍କୁ ଅନେକ ବିଷୟରେ ଆଲୋଚନା କରିବା ପାଇଁ ମଧ୍ୟ ସୁବିଧା ଦିଆଗଲା ନାହିଁ । ସରକାରଙ୍କ ଯାହା କରିବା କଥା, ତାହା ସେ ପୂର୍ବ ପରି ମନଇଚ୍ଛା କରିଯାଉଥିଲେ । ସବୁଠାରୁ କ୍ଷତିକାରକ ବିଷୟ ହେଲା ଏହି ସଂସ୍କାର ନାଆଁରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରାଗଲା । ମୁସଲମାନମାନଙ୍କ ପାଇଁ ଅଲଗା ଆସନ ରଖି ଦିଆଗଲା ଏବଂ ଏହି ଆସନ ପାଇଁ କେବଳ ମୁସଲମାନମାନେ ଭୋଟ ଦେଇ ପ୍ରତିନିଧି ବାଛିଲେ । ଲୋକଙ୍କ ମେଣ୍ଟ ଫଟାଇବା ପାଇଁ ଇଂରେଜମାନେ ଏପରି କୌଶଳ କରିଥିଲେ । ଲୋକେ ଏକଜୁଟ ହେଲେ ସେମାନଙ୍କର ବଳ ବଢ଼େ—ଭାଗ ଭାଗ ହୋଇଗଲେ ସେମାନେ ଦୁର୍ବଳ ହୋଇପଡନ୍ତି । ଦୁର୍ବଳ ଲୋକଙ୍କୁ ଶାସନ କରିବା ସହଜ । ତେଣୁ ଇଂରେଜମାନେ ଲୋକଙ୍କ ମେଣ୍ଟ ଭାଙ୍ଗି ଦୁର୍ବଳ କରି ସେମାନଙ୍କୁ ଶାସନ କରିବେ ବୋଲି ଭାବିଲେ । ଏହି ସଂସ୍କାର ଫଳରେ ଲୋକମାନେ ନିରାଶ ହେଲେ । ପ୍ରତ୍ୟେକ ଲୋକ ଭାବିଲେ, ନରମପନ୍ଥୀମାନେ ଇଂରେଜମାନଙ୍କ ଆନ୍ତରିକତାରେ ବିଶ୍ୱାସକରି ଠକାମିରେ ପଡିଯାଇଛନ୍ତି । ଯେଉଁ ଲୋକମାନେ ବିରୋଧ କରୁଥିଲେ ଓ ଇଂରେଜମାନଙ୍କ ସାଥିରେ ଲଢେଇ କରି ସେମାନଙ୍କୁ ତଡିଦେବାପାଇଁ ଚାହୁଁଥିଲେ- ସେମାନଙ୍କ ସଂଖ୍ୟା କ୍ରମେ କ୍ରମେ ବଢିଲା । ୧୯୧୪ ବେଳକୁ ୟୁରୋପରେ ଯୁଦ୍ଧ ଆରମ୍ଭ ହୋଇଗଲା । ସେହି ଆଳରେ ଇଂରେଜମାନେ ଦେଶକୁ ଆହୁରି କଠୋର ଭାବରେ ଶାସନ କରିବାକୁ ଚାହିଁଲେ । ସେମାନେ ଯୁକ୍ତି କଲେ ଯେ ଯୁଦ୍ଧ ସମୟରେ ଲୋକଙ୍କ ସ୍ୱାଧୀନତା ଅପେକ୍ଷା ଜାତିର ନିରାପତ୍ତା ହେଉଛି ବଡକଥା । ଯଦି ଶତ୍ରୁ ଜିତିଯାଏ, ସବୁ ସ୍ୱାଧୀନତା ଚାଲିଯିବ ।

୧୯୧୫ ମସିହାରେ ଯୁଦ୍ଧ ଚାଲିଥାଏ । ଆଫ୍ରିକାରୁ ଓକିଲାତି କରିବାପାଇଁ ଯାଇଥିବା ଜଣେ ଭାରତୀୟ ନିଜଦେଶକୁ ଫେରିଆସିଲେ । ପରବର୍ତ୍ତୀ ତିରିଶି ବର୍ଷଧରି ଭାରତବାସୀଙ୍କର ଜଣେ ମହାନନେତା ହେବାପାଇଁ ତାଙ୍କ ଭାଗ୍ୟରେ ଲେଖାଥାଏ । ସେ ଜନ୍ମ ହୋଇଥାନ୍ତି ଲୋକଙ୍କୁ ଏ ନୂଆ ବାଟରେ ନୂଆ ଢଙ୍ଗରେ ସ୍ୱାଧୀନତା ଲଢେଇ ଶିଖାଇବାପାଇଁ । ଅତୀତରେ କେବେ କେଉଁଠି କେହି ଏପରି ଯୁଦ୍ଧ କରି ସ୍ୱାଧୀନତା ହାସଲ କରିନାହିଁ । ସେହି ନେତା ହେଉଛନ୍ତି ଗାନ୍ଧିଜୀ ।

ଗାନ୍ଧିଜୀଙ୍କୁ ଦେଖିଲାମାତ୍ରେ ସମସ୍ତେ ତାଙ୍କୁ ଭଲ ପାଉଥିଲେ । ତାଙ୍କ ନିଜ ହୃଦୟରେ ମଧ୍ୟ ସବୁରି ପ୍ରତି ପ୍ରେମ ଛଡା ଆଉ କିଛି ନଥିଲା । ଏପରିକି ତାଙ୍କୁ ଯେଉଁମାନେ ମାଡଗାଳି ଦେଉଥିଲେ ସେମାନଙ୍କୁ ମଧ୍ୟ ସେ ଭଲ ପାଉଥିଲେ । ସେ ଜଣେ ଜ୍ଞାନୀ ମହାପୁରୁଷ ଥିଲେ । ସବୁଠାରୁ ବଡ କଥା ହେଉଛି ସେ ଜଣେ ଭଲ ମଣିଷ ଥିଲେ । ଲୋକେ ଯାହା କିଛି କରୁଛନ୍ତି, କାହିଁକି କରୁଛନ୍ତି ତାର କାରଣ ସମ୍ପର୍କରେ ନିଜକୁ ନିଜେ ବାରମ୍ବାର ପଚାରନ୍ତୁ ବୋଲି ସେ ଲୋକଙ୍କୁ ବୁଝାଉଥିଲେ । ଏକଥା ଯଦି ସେମାନେ ପରିଷ୍କାର ବୁଝିନାହାନ୍ତି ତେବେ ସବୁ ଭୁଲ୍ କାମ କରିଯିବେ ।

ଯେଉଁ ମନ୍ଦ ଅଭ୍ୟାସ ସେମାନେ ଛାଡିବାକୁ ବସିଛନ୍ତି, ତାହା ସେହିପରି ସମ୍ଭବ । ଭାରତୀୟମାନେ ଦାବୀ କରୁଛନ୍ତି ଯେ ସେମାନଙ୍କ ଭିତରେ ଏକତା ଅଛି । ସେମାନେ ଗୋଟିଏ ଜାତି । ସେମାନଙ୍କୁ ଶାସନ କରିବାର ଅଧିକାର ବିଦେଶୀମାନଙ୍କର ନାହିଁ । ଏପରି ଯଦି ସେମାନେ ଭାବୁଥାନ୍ତି, ତେବେ ହିନ୍ଦୁ ଓ ମୁସଲମାନମାନେ ନିଜ ଭିତରେ କଳି ଲଗାଉଛନ୍ତି କାହିଁକି ? କାହିଁକି ଉଚ୍ଚଜାତିର ହିନ୍ଦୁମାନେ ତାଙ୍କର ହରିଜନ ଭାଇମାନଙ୍କୁ ଅଛୁଆଁ ବୋଲି ମନେ କରୁଛନ୍ତି ? ହିନ୍ଦୁ ମୁସଲମାନଙ୍କୁ ଏକାଠି ରଖିବା-ପାଇଁ ଓ ହରିଜନମାନଙ୍କ ଅବସ୍ଥାର ଉନ୍ନତିପାଇଁ ଗାନ୍ଧିଜୀ ସାରା ଜୀବନ କାମକଲେ । ନୀଳ ବଗିଚାର ଇଂରେଜ ମାଲିକମାନେ ଚାଷୀମାନଙ୍କ ଉପରେ ଓ ଇଂରେଜ ମିଲ ମାଲିକମାନେ ମୂଲିଆଙ୍କ ଉପରେ ଖୁବ ଅତ୍ୟାଚାର ଚଲାଇଥାନ୍ତି । ୧୯୧୭ରେ ଗାନ୍ଧିଜୀ ବିହାରର ଚମ୍ପାରଣକୁ ଗଲେ ଓ ସେଠାରେ ଚାଷୀମାନଙ୍କ ପ୍ରତି କିପରି ନ୍ୟାୟ ବିଚାର କରାଯିବ ସେଥିପାଇଁ କାମକଲେ । ୧୯୧୮ରେ ଅହମଦାବାଦର ମିଲ ମଜଦୁରମାନଙ୍କ ଧର୍ମଘଟରେ ସେ ନେତୃତ୍ୱ ନେଇଥିଲେ । ସେଥିପାଇଁ ସେଠାରେ ସେ ଅନଶନ ଆରମ୍ଭ କଲେ ଏବଂ ଶେଷରେ ମଜଦୁରମାନଙ୍କ ମଜୁରୀ ବଢିଲା, ଶୀଘ୍ର ହେଉ ଅଥବା ବିଳମ୍ବରେ ହେଉ ବିଦେଶୀ ଇଂରେଜମାନେ ତ ଏ ଦେଶରୁ ଯିବେ ; କିନ୍ତୁ ଦେଶୀ ଜମିଦାର ଓ ଦେଶୀ କଳ କାରଖାନା ମାଲିକମାନେ ତ ରହିବେ ! ଗାନ୍ଧିଜୀ କହିଲେ ସେମାନେ ସେହିପରି ଅତ୍ୟାଚାର କରିବେ ନାହିଁ ତ ! ସ୍ୱାଧୀନତା ହାସଲ କରିବା ଯେତିକି ଦରକାର ହୃଦୟର ପରିବର୍ତ୍ତନ ମଧ୍ୟ ସେତିକି ଦରକାର । ତା ନହେଲେ ବିଦେଶୀମାନେ ଯେପରି ଭାରତ-ବାସୀଙ୍କ ଉପରେ ଅତ୍ୟାଚାର ଚଲାଇଛନ୍ତି, ଭାରତୀୟମାନେ ମଧ୍ୟ ସେହିପରି ତାଙ୍କ ଭାଇମାନଙ୍କ ପ୍ରତି ଅତ୍ୟାଚାର ଚଲାଇବେ । ତେଣୁ ସେ ଦେଶର ଧନୀ ଲୋକମାନଙ୍କୁ କହିଲେ, ସେମାନେ କେବଳ ଧନ ସଂପଦର ମାର୍ଫତ୍‌ଦାର । ସେ ଧନସଂପଦ ସାରା ଦେଶର ମଙ୍ଗଳ ପାଇଁ ଲାଗିବ ।

କିନ୍ତୁ ପ୍ରଥମ କାମ ହେଉଛି ବିଦେଶୀ ଶାସନ ହଟାଇବା । ଏ ସମ୍ପର୍କରେ ଗାନ୍ଧିଜୀ ଯାହା କହିଲେ ତାକୁ ପ୍ରଥମେ ଲୋକଙ୍କ ପକ୍ଷରେ ବୁଝିବା କଷ୍ଟକର ହେଲା । ସେ କହିଲେ, ହିଂସା ଦ୍ୱାରା କୌଣସି ସମସ୍ୟାର ସମାଧାନ ହୁଏ ନାହିଁ । ତୁମେ ସବୁବେଳେ ଅତ୍ୟାଚାରର ବିରୋଧ କର ; କିନ୍ତୁ ଅତ୍ୟାଚାରୀକୁ ଯଦି ଖୁବ ଘୃଣା କରିବ ଓ ତା'ପ୍ରତି ହିଂସା କରିବ, ତେବେ ତାର ବ୍ୟବହାର ଖରାପ ବୋଲି ଚିନ୍ତା କରିବାକୁ ସେ ସମୟ ପାଇବ ନାହିଁ । ଅନୁତାପ କରିବା ପାଇଁ ତା'ର ସୁଯୋଗ ନଥିବ । ସେ ତ ସବୁବେଳେ ଲାଗି ପଡ଼ିଥିବ ତୁମ ହିଂସାକୁ ପ୍ରତି ହିଂସାରେ ମୁକାବିଲା କରିବା ପାଇଁ । ଗାନ୍ଧିଜୀଙ୍କର କେବେ ହେଲେ ବିଶ୍ୱାସ ନଥିଲା ଯେ ଏପରି କୌଣସି ଖରାପ ଲୋକ ଅଛି ଯାହାର ସ୍ୱଭାବ ବଦଳାଇ ନ ହେବ । ସେ ମଧ୍ୟ ଦେଖିଲେ ଯେ ଆମେ ଇଂରେଜମାନଙ୍କ ଅନ୍ୟାୟ ବ୍ୟବହାରକୁ ଖରାପ ବୋଲି କହୁଛୁ । ଅଥଚ ଅନ୍ୟ ଲୋକଙ୍କ ପ୍ରତି ଆମେ ନିଜେ ଅନ୍ୟାୟ ବ୍ୟବହାର କରୁଛୁ ।

ଗାନ୍ଧିଜୀଙ୍କର ଏହି ନୂଆ ଢଙ୍ଗର ସ୍ୱାଧୀନତା ଲଢେଇ ଆଡକୁ ଅନେକ ଲୋକ ଟାଣି ହୋଇ ଆସିଲେ । ସେମାନେ ଗାନ୍ଧିଜୀଙ୍କ ସାଥିରେ ମିଶି ତାଙ୍କର ଅନୁଚର ହେଲେ । ତା'ପରେ ନିଜ ଯୋଗ୍ୟତା ବଳରେ ସେମାନେ ଜଣେ ଜଣେ ନେତା ହୋଇ ବାହାରିଲେ । ପ୍ରଥମେ ଗାନ୍ଧିଜୀଙ୍କ ଆଡକୁ ଆକୃଷ୍ଟ ହେଲେ ରାଜେନ୍ଦ୍ର ପ୍ରସାଦ । ସେତେବେଳେ ପାଟନାରେ ସେ ଜଣେ ଯୁବକ ଓକିଲ ଥାଆନ୍ତି ଓ ଭଲ ଓକିଲାତି କରୁଥାଆନ୍ତି । ନୀଳବଗିଚା ମାଲିକମାନଙ୍କର ଅତ୍ୟାଚାର ବିରୋଧରେ ଲଢ଼ି କୃଷୀମାନଙ୍କୁ ସାହାଯ୍ୟ କରିବା ପାଇଁ ଗାନ୍ଧିଜୀ ଯେତେବେଳେ ଚମ୍ପାରଣ ଗଲେ ରାଜେନ ବାବୁ ତାଙ୍କୁ ସାହାଯ୍ୟ କରିବା ପାଇଁ

ଆସିଲେ । ପରେ ମୌଲାନା ଅବୁଲ କଲମ ଆଜାଦ, ବଲ୍ଲଭ ଭାଇ ପଟେଲ, ମୋ. ତିଲାଲ ନେହେରୁ ଓ ତାଙ୍କ ପୁଅ ଜବାହରଲାଲ ନେହେରୁ ଆସି ଗାନ୍ଧିଜୀଙ୍କ ସାଥିରେ ଯୋଗ ଦେଲେ ।

ହିଂସା କରିଆରେ ସ୍ୱାଧୀନତା ମିଳିବ ବୋଲି ଯେଉଁ ଧାରଣା ଥିଲା ଗାନ୍ଧିଜୀ ତାକୁ ନାକଚ କରିଦେଲେ । କିନ୍ତୁ ଲୋକମାନଙ୍କୁ ଅଧିକ କ୍ଷମତା ଦେବା ପାଇଁ ବ୍ରିଟିଶ ସରକାରଙ୍କ ପାଖରେ ଭିକ ମାଗିବାକୁ ମଧ୍ୟ ସେ ରାଜି ନଥିଲେ । ସେ ଠିକ କଲେ ଇଂରେଜମାନଙ୍କ ସାଥିରେ ଲଢ଼ିବେ । ତାଙ୍କ ଲଢ଼େଇ ଥିଲା ଅଦ୍ଭୁତ ଧରଣର । ବିପ୍ଳବୀମାନଙ୍କ ସାହସଠାରୁ ଆହୁରି ବେଶୀ ସାହସ ବୋଧହୁଏ ଏହି ଲଢ଼େଇ ପାଇଁ ଦରକାର ହୁଏ । ଆଇନ ଯଦି ଅନ୍ୟାୟ ଭାବରେ ହୋଇଥାଏ, ତେବେ ଗାନ୍ଧିଜୀ ସେ ଆଇନ ଅମାନ୍ୟ କରିବେ । 'ତା' ବୋଲି କୌଣସି ଦଣ୍ଡରୁ ଖସିଯିବା ପାଇଁ ସେ ଚେଷ୍ଟା କରିବେ ନାହିଁ । ଇଂରେଜମାନେ ତାଙ୍କୁ ମାଡ ଦେଇ ଯଦି ଜେଲକୁ ପଠାଇ ଦିଅନ୍ତି ସେ ହସି ହସି ସେ ଦଣ୍ଡ ଗ୍ରହଣ କରିବେ । ଆହୁରି ବଡ କଥା ହେଉଛି, ସେମାନଙ୍କୁ ସେ ଘୃଣା କରିବେ ନାହିଁ । ଏହା ହିଁ ଥିଲା 'ଗାନ୍ଧିଜୀଙ୍କ ସତ୍ୟାଗ୍ରହର ମୂଳ' କଥା । ଦକ୍ଷିଣ ଆଫ୍ରିକାରେ ଗୋରା ଶାସକମାନେ କଳା ଲୋକଙ୍କ ଉପରେ ଅତ୍ୟାଚାର ଚଲାଇ ଥିବାବେଳେ ସେ ଏହା ପରୀକ୍ଷା କରି ଦେଖିଛନ୍ତି । ଭାରତକୁ ଫେରି ଆସିବା ପରେ ଗାନ୍ଧିଜୀ ଧୈର୍ଯ୍ୟ ଧରି ଲଢ଼େଇର ଏହି ବଡ କୌଶଳଟି ଆମକୁ ବତାଇ ଦେଲେ । ଏ ଲଢ଼େଇରେ ଶତ୍ରୁକୁ ଘୃଣା କରାଯାଏ ନାହିଁ । ଅନ୍ୟ କାହାରିକୁ କଷ୍ଟ ନ ଦେଇ ଏ ଲଢ଼େଇରେ ଜିଣିହୁଏ । ତା'ପରେ ତିରିଶି ବର୍ଷ ଧରି ସେ ଏହି ଅଦ୍ଭୁତ ଧରଣର ଯୁଦ୍ଧ ବାରମ୍ବାର ଚଲାଇଲେ ଏବଂ ପ୍ରତିଥର ତାଙ୍କର ଅନୁଗାମୀ ହେଉଥିବା ଲୋକଙ୍କ ଜମି ସଂଖ୍ୟା ବଢ଼ିବାରେ ଲାଗିଲା । ହିଂସା ଛାଡିବା ପାଇଁ ଗାନ୍ଧିଜୀ କପରି ଅଟଳ, ତାହା ଆରମ୍ଭ ବେଳର ଏହିପରି ଏକ ଲଢ଼େଇରୁ ଜଣା ପଡ଼ିବ । ଇଂରେଜ ଶାସକମାନେ ଲୋକଙ୍କୁ ଯେଉଁ ଅଳ୍ପ ସ୍ୱାଧୀନତା ଦେଇଥିଲେ ତାହା ପ୍ରଥମ ମହାସମର ବେଳେ କାଢ଼ି ନେଲେ । ସରକାର ଯାହାକୁ ଚାହିଁଲେ ସନ୍ଦେହରେ ଗିରଫ କରିନେଇ ଦଣ୍ଡ ଦେଲେ । କୌଣସି ଲୋକ ସ୍ୱାଧୀନ ଭାବରେ 'କଥା କହି ପାରିଲା ନାହିଁ କି କିଛି ଲେଖି ପାରିଲା ନାହିଁ । ୧୯୧୭ରେ ଇଂରେଜ ସରକାର ପୁଣି କେତେକ ସଂସ୍କାର କଥା ଘୋଷଣା କଲେ । ତାକୁ କୁହାଗଲା ମଣ୍ଟାଗୁ—ଚେମସ୍‌ଫୋର୍ଡ ସଂସ୍କାର ସେମାନେ ଗୋଟାଏ ଲୁଚା ପ୍ରତିଶ୍ରୁତି ଦେଲେ ଯେ ଭାରତୀୟମାନେ ଯେତେବେଳେ ନିଜେ ନିଜକୁ ଶାସନ କରିବା ପାଇ ଯୋଗ୍ୟତା ହାସଲ କରିବେ, ସେତେବେଳେ ସେମାନଙ୍କୁ ଅଧିକ କ୍ଷମତା ଦିଆଯିବ ଯୁଦ୍ଧ ଶେଷ ହେଲା । କିନ୍ତୁ ଦେଖିଲା ବେଳକୁ ଇଂରେଜମାନେ ଯୁଦ୍ଧ ବେଳର ଆଇନ କଟକଣା ଉଠାଇ ଦେବେ କ'ଣ ଓଲଟି ସେ ଗୁଡ଼ିକୁ ଚାଲୁ ରଖିବା ପାଇଁ ରାଓଲଟ ଆଇନ ପାସ କଲେ ଏହାର ପ୍ରତିବାଦ କରି ସାରା ଭାରତରେ ସଭା ସମିତିମାନ ହେଲା

୧୯୧୯ ମସିହା ଏପ୍ରିଲ ୧୩ ତାରିଖ। ଅମୃତସରର ଜାଲିଆନାୱାଲା ବାଗ୍‌ରେ ପ୍ରାୟ କୋଡ଼ିଏ ହଜାର ଲୋକ ରୁଣ୍ଡ ହୋଇଛନ୍ତି। ସେମାନଙ୍କ ଭିତରେ ଅନେକ ବୁଢ଼ା, ପିଲା ଓ ସ୍ତ୍ରୀଲୋକ ଅଛନ୍ତି। ସରକାରଙ୍କ ଦମନମୂଳକ ଆଇନ ବିରୋଧରେ ନେତାମାନେ ଯେଉଁ ଭାଷଣ ଦେବେ, ସେମାନେ ତାହା ଶୁଣିବା ପାଇଁ ଅପେକ୍ଷା କରିଛନ୍ତି। ଏତିକି ବେଳେ ଜେନେରାଲ ଡାୟାର ବୋଲି ଜଣେ ଇଂରେଜ ଅଫିସର ସୈନ୍ୟମାନଙ୍କୁ ଧରି ସେଠାରେ ପହଞ୍ଚି ଗଲେ। ସେ ଆଗରୁ କହିଥାନ୍ତି ଯେ ଭାରତୀୟମାନଙ୍କୁ ଗୋଟାଏ ଉଚିତ ଶିକ୍ଷା ଦେବେ। ଲୋକଙ୍କୁ କୌଣସି ସତର୍କବାଣୀ ଶୁଣାଇଲେ ନାହିଁ। ସାଙ୍ଗେ ସାଙ୍ଗେ ଗୁଳି ଫାୟାର କରିବା ପାଇଁ ହୁକୁମ ଦେଇ ଦେଲେ। ଏକ ହଜାରରୁ ଅଧିକ ଲୋକ ମଲେ ଓ ଆହୁରି ବେଶୀ ଲୋକ ଆହତ ହେଲେ। ଏହି ହତ୍ୟାକାଣ୍ଡ ଫଳରେ ସାରା ଭାରତ ଥରହର ହୋଇଗଲା। ତଥାପି ଗାନ୍ଧିଜୀ ତାଙ୍କ ବିଶ୍ୱାସରେ ଅଟଳ ରହିଥାନ୍ତି। ସେ କହିଥାନ୍ତି ଯେ କେବଳ ଅହିଂସା ଦ୍ୱାରା ହିଁ ହିଂସାର ପ୍ରତିରୋଧ କରାଯାଇ ପାରିବ। ପୁଣି ୧୯୨୨ରେ ଗାନ୍ଧିଜୀ ସ୍ଥିର କଲେ ଯେ ବର୍ଦ୍ଦୋଲି ବୋଲି ଗୁଜରାଟର ଗୋଟିଏ ତାଲୁକାରେ ସେ ସତ୍ୟାଗ୍ରହ କରିବେ। ତାଙ୍କ ସହିତ ଦଳ ଦଳ ହୋଇ ଲୋକମାନେ ଆଇନ ଅମାନ୍ୟ କରିବେ। ଏଥିପାଇଁ ସବୁ ଆୟୋଜନ ହୋଇଯାଇଥାଏ ଓ ସମସ୍ତେ ପ୍ରସ୍ତୁତ ଥାଆନ୍ତି। କିନ୍ତୁ ବର୍ଦ୍ଦୋଲିର ଏହି ଆଇନ ଅମାନ୍ୟ ଆନ୍ଦୋଳନ ପ୍ରକୃତରେ ଆରମ୍ଭ ହେବା ପୂର୍ବରୁ ଉତ୍ତର ପ୍ରଦେଶର ଚଉରି ଚଉରାଠାରେ ଦଳେ ଲୋକ ଗଣ୍ଡଗୋଳ ଆରମ୍ଭ କରିଦେଲେ। ପୋଲିସ ସେମାନଙ୍କ ଉପରେ ଗୁଳି ଚଳାଇଲେ। ତା' ବଦଳରେ ଲୋକେ ପୋଲିସ ଥାନାରେ ନିଆଁ ଲଗାଇ ଦେଲେ ଓ କେତେ ଜଣ ପୋଲିସ ଲୋକ ନିଆଁରେ ପୋଡ଼ି ହୋଇ ମରିଗଲେ। ଗାନ୍ଧିଜୀ ସଙ୍ଗେ ସଙ୍ଗେ ବର୍ଦ୍ଦୋଲି ସତ୍ୟାଗ୍ରହ ବନ୍ଦ କରି ଦେଲେ। ଏଥିରେ ତାଙ୍କର ଅତି ବିଶ୍ୱସ୍ତ ଅନୁଚରମାନେ ବହୁତ ଦୁଃଖିତ ହେଲେ। କିନ୍ତୁ ପରେ ସେମାନେ ବୁଝିଲେ ଯେ ଗାନ୍ଧିଜୀ ତାଙ୍କର ଯେଉଁ ନୀତିରେ ଅଟଳ ରହିଥିଲେ ସେ ନୀତି କେତେ ମହାନ।

ପ୍ରକୃତରେ ଛଅ ବର୍ଷ ପରେ ବର୍ଦ୍ଦୋଲି ସତ୍ୟାଗ୍ରହ ହେଲା। ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏହା ଏକ ପ୍ରସିଦ୍ଧ ଘଟଣା। ୧୯୨୮ରେ ଇଂରେଜ ସରକାର ଗୁଜରାଟର ବର୍ଦ୍ଦୋଲିରେ ଜମି ଖଜଣା ବଢ଼ାଇ ଦେଲେ। ସେତେବେଳେ ବଲ୍ଲଭ ଭାଇ ପଟେଲ ନାମଜାଦା ଓକିଲ ଥାଆନ୍ତି। ଭଲ ଓକିଲାତି କରି ସେ ବହୁତ ପଇସା ରୋଜଗାର କରୁଥାନ୍ତି। ଗାନ୍ଧିଜୀ ଓକିଲମାନଙ୍କୁ ଅନୁରୋଧ କଲେ ଇଂରେଜ ସରକାରଙ୍କ ଆଇନ ଅଦାଲତ ବାସନ୍ଦ କର। ବଲ୍ଲଭ ଭାଇ ପଟେଲ ଗାନ୍ଧିଜୀଙ୍କ ଡାକରାରେ ଓକିଲାତି ଛାଡ଼ିଦେଇ ଜାତୀୟ ଆନ୍ଦୋଳନରେ ଯୋଗ ଦେଲେ। ୧୯୨୮ରେ ବଲ୍ଲଭ ଭାଇ ପଟେଲ ବର୍ଦ୍ଦୋଲିରେ ଲୋକଙ୍କୁ କର ନ ଦେବା ପାଇଁ ମତାଇ ଆନ୍ଦୋଳନ ଚଳାଇଲେ। ବମ୍ବେର ଲାଟ ସାହେବ କହିଲେ ଯେ ବ୍ରିଟିଶ ସାମ୍ରାଜ୍ୟର ସବୁ ଶକ୍ତି ଖଟାଇ ଏ ଆନ୍ଦୋଳନକୁ ଧ୍ୱଂସ କରି ଦିଆଯିବ ଓ କୃଷୀମାନେ ନିଃସ୍ୱ କରି ଦେବେ। କିନ୍ତୁ ଅଶୀ ହଜାର କୃଷୀ ଅତି ସାହସର ସହିତ ଇଂରେଜ ସରକାରଙ୍କ ଦମନର ପ୍ରତିରୋଧ କଲେ। ସେମାନଙ୍କର ସର୍ଦ୍ଦାର ଥିଲେ ବଲ୍ଲଭ ଭାଇ ପଟେଲ। ଶେଷରେ ଇଂରେଜ ସରକାର ହାର ମାନିଲେ ଏବଂ ସେହିଦିନ ଠାରୁ ବଲ୍ଲଭ ଭାଇଙ୍କୁ ସମସ୍ତେ ଜାଣିଲେ ସର୍ଦ୍ଦାର ପଟେଲ ବୋଲି। ଭାରତର ସ୍ୱାଧୀନତା ସଂଗ୍ରାମରେ ବର୍ଦ୍ଦୋଲି ଏକ ସ୍ମୃତି ଚିହ୍ନ ହୋଇ ରହିଗଲା।

ଭାରତବାସୀଙ୍କ ପ୍ରତି ନ୍ୟାୟ ବିଚାର କରିବା ସକାଶେ ଇଂରେଜ ସରକାରଙ୍କୁ ଆଉ ଥରେ ସୁଯୋଗ ଦିଆଗଲା। ସି.ଆର. ଦାସ ଓ ମୋତିଲାଲ ନେହେରୁଙ୍କ ନେତୃତ୍ୱରେ ଗଠିତ 'ସ୍ୱରାଜ ପାର୍ଟି' ସରକାରଙ୍କୁ କହିଲେ ଯେ ସେମାନେ ସରକାରଙ୍କ ସହିତ ସହଯୋଗ କରିବାକୁ ପ୍ରସ୍ତୁତ ଅଛନ୍ତି। ବିଭିନ୍ନ ପ୍ରଦେଶର ବିଧାନ ସଭା ଓ କେନ୍ଦ୍ର ବ୍ୟବସ୍ଥା ସଭାର ନିର୍ବାଚନରେ ସେମାନେ ଭାଗ ନେବେ। କିନ୍ତୁ ୧୯୨୬ରେ ସ୍ୱରାଜ ଦଳ କେନ୍ଦ୍ର ବ୍ୟବସ୍ଥା ସଭା ଛାଡ଼ି ଚାଲି ଆସିବାକୁ ସ୍ଥିର କଲେ। ଏହାର କାରଣ ଦର୍ଶାଇ ମୋତିଲାଲ ନେହେରୁ କହିଲେ—ଆମେ ସହଯୋଗ କରିବୁ ବୋଲି ଯେଉଁ ପ୍ରତିଶ୍ରୁତି ଦେଇଥିଲୁ, ସରକାରଙ୍କ ଆଡ଼ୁ ପ୍ରଥମେ ତାହା ଅଗ୍ରାହ୍ୟ କରାଗଲା। ବର୍ତ୍ତମାନ ଆମର ଲକ୍ଷ୍ୟ ହାସଲ ପାଇଁ ଆମକୁ ଅନ୍ୟ ଉପାୟ ଚିନ୍ତା କରିବା ବେଳ ଆସିଛି।

ସ୍ୱାଧୀନତାର ଏହି ଦୀର୍ଘ ସଂଗ୍ରାମ ଭିତରେ କେତେଥର ବଡ ବଡ ସଂଘର୍ଷ ହୋଇ ଯାଇଛି। ଭାରତବାସୀ ଅଡ଼ି ବସିଲେ ଯେ ସ୍ୱାଧୀନତା ପାଇଁ ସେମାନେ ଆଉ ଅପେକ୍ଷା କରି ବସି ପାରିବେ ନାହିଁ। ସେମାନଙ୍କୁ ଶୀଘ୍ର ସ୍ୱାୟତ୍ତଶାସନ କ୍ଷମତା ଦିଆଯାଉ। କିନ୍ତୁ ଇଂରେଜ ସରକାର ଟାଳଟୁଳ ନୀତିଧରି ସମୟ ଗଡାଇ ଦେବାକୁ ଚେଷ୍ଟାକଲେ। ଇଂରେଜମାନେ ପ୍ରସ୍ତାବ ଦେଲେ ଗୋଟିଏ କମିଶନ ବସିବ, ସେ କମିଶନ ପରୀକ୍ଷା କରି ଦେଖିବ, ଭାରତର ଲୋକେ ନିଜକୁ ନିଜେ ଶାସନ କରିବା ପାଇଁ ଯୋଗ୍ୟ ହେଲେଣି କି ନାହିଁ। ୧୯୨୮ରେ ସାଇମନ କମିଶନ ଏଥିପାଇଁ ଭାରତ ଆସିଲେ। ସାରା ଭାରତ ତାଙ୍କୁ ବିରୋଧ କଲା। ଏକ ପ୍ରତିବାଦ ସଭାରେ ପୋଲିସର ଲାଠିମାଡ ଖାଇ ଲାଲା ଲଜପତ୍ ରାୟଙ୍କ ମୃତ୍ୟୁ ଘଟିଲା।

ସ୍ୱାଧୀନତା ହାସଲ ପାଇଁ ଦେଶର ଚାରିଆଡେ ସେତେବେଳକୁ ଏକ ଶକ୍ତିଶାଳୀ ଆନ୍ଦୋଳନ ଆରମ୍ଭ ହୋଇ ଯାଇଥାଏ। ୧୯୨୯ରେ କଂଗ୍ରେସର ବାର୍ଷିକ ଅଧିବେଶନ ଲାହୋରରେ ବସିଥାଏ। ଜବାହରଲାଲ ନେହେରୁ ସଭାପତି ଭାବରେ ନିର୍ବାଚିତ ହୋଇଥାନ୍ତି। ନେତାମାନେ ଏଥର କଣ କରୁଛନ୍ତି ସାରା ଦେଶ ତାହା ଦେଖିବାକୁ ଅପେକ୍ଷା କରିଥାଏ। ଏହି ଐତିହାସିକ ଅଧିବେଶନରେ ଘୋଷଣା କରାଗଲା ଯେ ପୂର୍ଣ୍ଣ ସ୍ୱରାଜ ଅର୍ଥାତ୍ ସମ୍ପୂର୍ଣ୍ଣ ସ୍ୱାଧୀନତା ନ ପାଇବା ପର୍ଯ୍ୟନ୍ତ ଭାରତର ଲୋକେ ସନ୍ତୁଷ୍ଟ ହେବେ ନାହିଁ ବୋଲି ସ୍ଥିର କରି ନେଇଛନ୍ତି। ଆଉ ବେଶୀ ସମୟର ଦରକାର ନାହିଁ। ଧୀରେ ଧୀରେ ସ୍ୱାଧୀନତା ଦେବାର ପ୍ରତିଶ୍ରୁତିରେ ସେମାନେ ରାଜି ନୁହନ୍ତି। ୧୯୩୦ ମସିହା ଜାନୁୟାରୀ ୨୬ରେ ଭାରତର ଜନତା ଶପଥ ନେଲା ଯେ ସ୍ୱାଧୀନତା ପାଇଁ ସଂଗ୍ରାମ ଚାଲିବ। ଆଉ ଏକ ସତ୍ୟାଗ୍ରହ ଆରମ୍ଭ କରିବାକୁ ଲାହୋର କଂଗ୍ରେସ ବୈଠକରେ ସ୍ଥିର ହେଲା। ଏହା ଏକ ବିରାଟ ଶକ୍ତିଶାଳୀ ଆନ୍ଦୋଳନ ହେବ। ଏହାର ନେତା ହେବେ ଗାନ୍ଧିଜୀ। ସାରା ଭାରତ ତାଙ୍କ ପଛରେ ଛିଡ଼ା ହେବ। ସେ ଯାହା କହିବେ ସମସ୍ତେ ତାହାହିଁ କରିବେ।

ଗାନ୍ଧିଜୀ ବହୁ ସମୟ ଧରି ଗମ୍ଭୀର ଚିନ୍ତା କଲେ। ତାପରେ ଆଇନ୍ ଅମାନ୍ୟ ଓ ସତ୍ୟାଗ୍ରହ କରିବା କରିବା ପାଇଁ ଗୋଟିଏ ନୂଆବାଟ ବାହାର କଲେ।

ସେତେବେଳେ ଭାରତରୁ କଞ୍ଚାମାଲ ଅତି ଶସ୍ତାରେ କିଣା ହୋଇ ବ୍ରିଟିଶ ଜାହାଜରେ ବୋଝେଇ ହୋଇ ବିଲାତ ଯାଉଥା ଫେରିଲାବେଳେ ଆମ ଦେଶରେ ବିକ୍ରି ହେବାପାଇଁ କଳ ତିଆରି ଜିନିଷ ପତ୍ର ଓ ଭାରତରେ ଥିବା ବ୍ରିଟିଶ କଳକାରଖାନା ପାଇଁ ଯନ୍ତ୍ରପାତି ସେହି ସବୁ ଜାହାଜରେ ଆସେ। ଏହି ଜିନିଷ ପତ୍ରର ଓଜନ ସେତେବେଶୀ ନୁହେଁ। ଓଜନିଆ ଜିନିଷ ପତ୍ର ନଥିଲେ ଜଳଯାତ୍ରା କରିବା ପାଇଁ ଜାହାଜର ବିଶେଷ ଅସୁବିଧା ହୁଏ। ତେଣୁ ଇଂରେଜମାନେ ଏହିସବୁ ଜାହାଜରେ ବିଲାତରୁ ଲୁଣ ଭର୍ତ୍ତିକରି ଆଣନ୍ତି ଓ ଚଢ଼ାଦାମରେ ତାକୁ ଆମ ଦେଶରେ ବିକନ୍ତି। ଅନ୍ୟ କୌଣସି ପ୍ରକାର ଲୁଣ ଯେପରି ଏଠାରେ ନ ମିଳିବ ସେଥିପାଇଁ ଇଂରେଜ ସରକାର ହୁକୁମ ଜାରି କଲେ ଯେ ଭାରତୀୟମାନଙ୍କୁ ଲୁଣ ମାରିବା ମନା। କିନ୍ତୁ ଭାରତର ଏତେ ଲମ୍ବ ଉପକୂଳରେ ସମୁଦ୍ର ଲୁଣି ପାଣିରୁ ଯେ କେହି ଅତି ସହଜରେ ଲୁଣ ମାରିପାରିବ। ବିଲାତରୁ ଲୁଣ ଆସି ଏଠି ଯେଉଁ ଦରରେ ବିକ୍ରୀ ହେଉଥିଲା, ତାର କୋଡ଼ିଏ ଭାଗରୁ ଭାଗେ ଖର୍ଚ୍ଚ କଲେ ସେତିକି ଲୁଣ ମିଳୁଥିଲା। ଗାନ୍ଧିଜୀ ଖୁବ ବଡବଡ କଥାକୁ ଅତି ସରଳ ଭାବରେ ବୁଝାଇ ଦିଅନ୍ତି। ୧୯୩୦ରେ ସେ

ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ଭାରତର ବିଭିନ୍ନ ସ୍ଥାନର ଲୋକମାନେ ଆଇନ ଅମାନ୍ୟ କରି ସମୁଦ୍ରରୁ ଲୁଣ ମାରିବା ଆରମ୍ଭ କରିଦେଲେ । ଗାନ୍ଧିଜୀ ନିଜେ ଗୁଜରାଟ ଉପକୂଳରେ ଥିବା ଦାଣ୍ଡିକୁ ଲୁଣ ମାରିବା ପାଇଁ ଗଲେ । ତାଙ୍କୁ ଗିରଫ କରାଗଲା । କିନ୍ତୁ ସତ୍ୟାଗ୍ରହ ପୂରାମାତ୍ରାରେ ଚାଲିଥାଏ । ହଜାର ହଜାର ପୁରୁଷ ସ୍ତ୍ରୀ ଶାନ୍ତି ପୂର୍ଣ୍ଣ ଭାବରେ ଆଇନ ଅମାନ୍ୟ କରି ଲାଠିମାଡ ଖାଇଲେ । ଜେଲଖାନା ଗଲେ । ବ୍ରିଟିଶ ଶାସନ କିପରି ଅନ୍ୟାୟ ଭାବରେ ଚାଲିଛି, ତାହା ପଦାରେ ପଡ଼ିଗଲା ।

ଇଂରେଜମାନେ ଅତିଶସ୍ତା କଳତିଆରି ଜିନିଷ ଆଣି ଏଠାରେ ବିକ୍ରୀ କରିବା ଦିନଠାରୁ ଭାରତର ନେତାମାନେ ବୁଝି ପାରିଥିଲେ ଯେ ଦେଶର ଘୋର କ୍ଷତି ହେବାକୁ ଯାଉଛି । ଆମ ନିଜର କୁଟୀର ଶିଳ୍ପ ଓ ହସ୍ତଶିଳ୍ପ ଧ୍ୱଂସ ପାଇଯିବ । ଆମେ ନିଜ ମେସିନ ତିଆରି ଶିଳ୍ପର ଉନ୍ନତି ମଧ୍ୟ କରିବାକୁ ସକ୍ଷମ ହେବୁ ନାହିଁ । ଭାରତର ଜନତା ଆହୁରି ଦୁଃଖ ଭୋଗିବେ ଓ ଗରିବ ହୋଇଯିବେ । ତେଣୁ ନେତାମାନେ କହିଲେ ବିଦେଶୀ ଜିନିଷ କିଣ ନାହିଁ । ଅନ୍ୟ ଭାଷାରେ କହିବାକୁ ଗଲେ ସମସ୍ତଙ୍କୁ ବିଦେଶୀ ଜିନିଷ ବାସନ୍ଦ କରିବା ପାଇଁ ଓ କେବଳ ସ୍ୱଦେଶୀ ଜିନିଷ କିଣିବା ପାଇଁ ନେତାମାନେ ପରାମର୍ଶ ଦେଲେ ।



ସର୍ବ ପ୍ରଥମେ ଭୋଲାନାଥ ଚନ୍ଦ୍ର, ଗୋପାଳ ରାଓ ଦେଶମୁଖ, ଏମ. ଜି. ରାଣାଡେ, ରାଜ ନାରାୟଣ ବୋଷ ଓ ତିଳକ ବିଦେଶୀ ଜିନିଷ ଛାଡ଼ି ସ୍ୱଦେଶୀ ଜିନିଷର ବ୍ୟବହାର ଆରମ୍ଭ କରିଦେଲେ । ବଙ୍ଗ ଭଙ୍ଗ ବେଳେ ଏହି ବାସନ୍ଦ ଓ ସ୍ୱଦେଶୀ ଆନ୍ଦୋଳନ ଖୁବ୍ ଜନପ୍ରିୟ ହୋଇଥିଲା ଏବଂ ହଜାର ହଜାର ଲୋକ ଏଥିରେ ଯୋଗ ଦେଇଥିଲେ । ଗାନ୍ଧିଜୀ ପୁଣି ପୂର୍ଣ୍ଣ ଦମ୍‌ରେ ଏହି ଆନ୍ଦୋଳନ ଚଳାଇଲେ । ଗାନ୍ଧିଜୀ ଲୋକମାନଙ୍କୁ ବିଲାତି ଜିନିଷ, ବିଶେଷକରି ବିଲାତି ଲୁଗା ନକିଣିବା ପାଇଁ କହିଲେ । ଅରଟରେ ସୂତା କାଟି ହାତ ତନ୍ତରେ ଖଦୀ ବୁଣିବାକୁ ଓ ଭାରତ ତିଆରି ଜିନିଷ ବ୍ୟବହାର କରିବାକୁ ସେ ଲୋକମାନଙ୍କୁ ବୁଝାଇଲେ । ସ୍ୱଦେଶୀ ଆନ୍ଦୋଳନ ବିଶେଷ ସଫଳ ହେଲା । ମଠୋଇବାଲା ବିଦେଶରୁ ଆସୁଥିବା ଚିନି ବ୍ୟବହାର କରିବାକୁ ମନା କରିଦେଲେ । ଧୋବା ବିଦେଶୀ ଲୁଗା କାଚିବାକୁ ନେଲେ ନାହିଁ । ବିଦେଶୀ କାଚ ଚୂଡ଼ି ପିନ୍ଧିବାକୁ ସ୍ତ୍ରୀ ଲୋକମାନେ ମନାକଲେ । ଛାତ୍ରମାନେ ବିଦେଶୀ କାଗଜ ଛୁଇଁଲେ ନାହିଁ । ଚଳିବାପାଇଁ ଯେଉଁ ଜିନିଷ ଦରକାର, ଭାରତର ଲୋକେ ସେ ସବୁ ତିଆରି ଆରମ୍ଭ କରିଦେଲେ ।

ଘରଆଡ଼େ କୁଟୀର ଶିଳ୍ପ ମୁଣ୍ଡ ଟେକି ଉଠିଲା । ଲୋକେ ନିଜ ହାତରେ ଦିଆସିଲି, ସାବୁନ, କାଗଜ, ଚିନାମାଟି ବାସନ ଓ ଚମଡ଼ା ଜିନିଷ ତିଆରି କଲେ । ଇସ୍ପାତ ଓ ଅନ୍ୟାନ୍ୟ ଦରକାରୀ ଜିନିଷ ତିଆରି ପାଇଁ ବଡ଼ ବଡ଼ କଳ କାରଖାନା ବସିଲା ।

୧୯୩୫ରେ ଇଂରେଜମାନେ ଶାସନରେ ଆଉ କେତେକ ଅଦଳ ବଦଳ ପାଇଁ ପ୍ରସ୍ତାବ ଦେଲେ । ସେମାନେ କହିଲେ ଆହୁରି ବେଶୀ ଲୋକଙ୍କୁ ଭୋଟ ଅଧିକାର ଦିଆଯିବ । ଯେଉଁ ନେତାମାନେ ଭୋଟରେ ଜିତିବେ ସେମାନେ ବିଭିନ୍ନ ପ୍ରଦେଶରେ ସରକାର ଗଢ଼ିବେ । କିନ୍ତୁ ଲାଟମାନଙ୍କ ହାତରେ ଅଧିକ କ୍ଷମତା ରହିବ । ନିର୍ବାଚିତ ନେତାମାନେ ଯେଉଁସବୁ ଆଇନ୍ ପାସ କରିବେ, ଲାଟ ସାହେବ ଇଚ୍ଛା କଲେ ତାକୁ କାଟି ଦେଇ ପାରିବେ । ଇଚ୍ଛା କଲେ ସେ ନିଜେ ମଧ୍ୟ ଆଇନ ଜାରି କରି ପାରିବେ । ଏ ସଂସ୍କାର ଲୋକଙ୍କ ମନକୁ ପାଇଲା ନାହିଁ । ତଥାପି କଂଗ୍ରେସ ଠିକ୍ କଲା ଥରେ ଏହାକୁ ପରୀକ୍ଷାକରି ଦେଖିବ । ୧୯୩୭ରେ କଂଗ୍ରେସ ପ୍ରାର୍ଥୀମାନେ ଭୋଟରେ ଜିତି ଅନେକ ପ୍ରଦେଶରେ ମନ୍ତ୍ରୀ ମଣ୍ଡଳ ଗଢ଼ିଲେ । କିନ୍ତୁ ୧୯୩୯ରେ ଯେତେବେଳେ ଯୁଦ୍ଧ ଲାଗିଗଲା, କଂଗ୍ରେସର ମନ୍ତ୍ରୀମାନେ ଇସ୍ତଫା ଦେଲେ । ତାର ଦୁଇଟି କାରଣ ଥିଲା । ପ୍ରଥମଟି ହେଉଛି—ଇଂରେଜ ସରକାର ଆମ ନେତାମାନଙ୍କୁ ନ ପଚାରି ଘୋଷଣା କରିଦେଲେ ଯେ ଜର୍ମାନୀ ସହିତ ଭାରତର ଯୁଦ୍ଧ ଆରମ୍ଭ ହୋଇଗଲା । ଦ୍ୱିତୀୟଟି ହେଉଛି—ଜର୍ମାନୀ ୟୁରୋପର ଯେଉଁ ସବୁ ଦେଶ ଦଖଲ କରିଛି, ସେଗୁଡ଼ିକୁ ମୁକ୍ତ କରିବାପାଇଁ ଇଂଲଣ୍ଡ ଯୁଦ୍ଧ ଚଳାଇଛି ବୋଲି ଛଳନା କଲା । ସେତେବେଳେ ଆମ ନେତାମାନେ କହିଲେ, ଇଂରେଜ ସରକାର ଆଗ ଭାରତକୁ ସ୍ୱାଧୀନତା ଦେଇ ନିଜ କଥାର ପ୍ରମାଣ ଦିଅନ୍ତୁ ।

ଏହି ଯୁଦ୍ଧ ଯୋଗୁ ୧୯୪୨ ମସିହା ବେଳକୁ ଭାରତ ଉପରେ ବିପଦ ଘନେଇ ଆସିଲା । ସେତେବେଳେ ବ୍ରିଟେନ ଓ ତାର ମିତ୍ର ଦେଶମାନଙ୍କ ବିରୋଧରେ ଜାପାନ ଯୁଦ୍ଧ ଘୋଷଣା କରିଥାଏ । ଇଂରେଜ ସରକାର ଭାରତରେ ବହୁ ସଂଖ୍ୟାରେ ସୈନ୍ୟ ରଖି ଥିବାରୁ ଜାପାନ ଭାରତ ଉପରେ ଆକ୍ରମଣ କରିବ ବୋଲି ଧମକ ଦେଲା । ତେଣୁ କଂଗ୍ରେସ "ଭାରତ ଛାଡ଼" ଆନ୍ଦୋଳନ ଆରମ୍ଭ କଲା ଓ ଇଂରେଜମାନଙ୍କୁ ଶୀଘ୍ର ଭାରତ ଛାଡ଼ି ଚାଲି ଯିବାପାଇଁ କହିଲା । ଏଥିରେ ଇଂରେଜ ସରକାର ରାଗିଯାଇ ଭାରତର ନେତାମାନଙ୍କୁ ଗିରଫ କରି ଜେଲ୍‌ଖାନାକୁ ନେଇଗଲେ । ତେଣୁ ଲୋକେ ଉତ୍‌କ୍ଷିପ୍ତ ହୋଇ ସରକାରଙ୍କ ବିରୋଧରେ ନାନା ଭାବରେ ଲଢ଼ିବାକୁ ବାହାରି ପଡ଼ିଲେ । ଏହି ଆନ୍ଦୋଳନ ଠିକ୍ ୧୮୫୭ ମସିହାର 'ସିପାହୀ ବିଦ୍ରୋହ' ଭଳି ବିରାଟ ଆକାର ଧାରଣ କଲା । ତଥାପି ଇଂରେଜ ଶାସକମାନେ ନେତାମାନଙ୍କ କଥାରେ ରାଜି ହେଲେ ନାହିଁ । ଆଖିବୁଜା ଅତ୍ୟାଚାର ଚଳାଇଲେ । ଆନ୍ଦୋଳନକୁ ଦବାଇ ଦେବାପାଇଁ ଚେଷ୍ଟା କଲେ । ହଜାର ହଜାର ଲୋକଙ୍କ ଉପରେ ଲାଠି ଓ ଗୁଳି ଚାଲିଲା, ହଜାର ହଜାର ଲୋକଙ୍କୁ ଜେଲ୍‌ରେ ବନ୍ଦୀ କରାଗଲା ।

ଯୁଦ୍ଧ ସରିଲା ପରେ ଇଂଲଣ୍ଡରେ ଶ୍ରମିକ ଦଳ ଶାସନ କ୍ଷମତାକୁ ଆସିଲେ । ବଳ ପ୍ରୟୋଗ କରି ଭାରତକୁ ଆଉ ଶାସନ କରି ହେବ ନାହିଁ, ଏକଥା ସେମାନଙ୍କୁ ଜଣାଥିଲା । ସେମାନଙ୍କ ମଧ୍ୟରୁ ଅନେକେ ମଧ୍ୟ କହୁଥିଲେ ଯେ ଭାରତୀୟମାନଙ୍କ ପ୍ରତି ବଳପ୍ରୟୋଗ କରିବା ଠିକ୍ ନୁହେଁ । ଇଂରେଜମାନେ ଅନ୍ୟାୟ କରୁଛନ୍ତି ବୋଲି ଗାନ୍ଧିଜୀ ସେମାନଙ୍କୁ ଚେତାଇ ଦେଇଥାନ୍ତି । ତେଣୁ ଭାରତର ଭବିଷ୍ୟତ କଣ ହେବ ସେ ବିଷୟରେ ଆଲୋଚନା କରିବା ପାଇଁ ବିଲାତର ମନ୍ତ୍ରୀମଣ୍ଡଳ ଦଳେ ପ୍ରତିନିଧିଙ୍କୁ ପଠାଇଲେ ।



ଗାନ୍ଧିଜୀଙ୍କ ଅନୁଚରମାନଙ୍କ ଭିତରେ ଥିଲେ ମୌଲାନା ଆବୁଲ କାଲାମ ଆଜାଦ, ଖାଁ ଅବଦୁଲ ଗଫର ଖାଁ, ହକିମ୍ ଅଜମଲ ଖାଁ ଓ ଡଃ ଜାକିର ହୁସେନ (ଯେ କି ପରେ ରାଷ୍ଟ୍ରପତି ହେଲେ) ଙ୍କ ଭଳି ହଜାର ହଜାର ମୁସଲମାନ ନେତା। ଇଂରେଜ ସରକାର ଆଗରୁ ହିନ୍ଦୁ ମୁସଲମାନମାନଙ୍କୁ ଅଲଗା ଅଲଗା କରି ରଖିବାକୁ ଓ ତାଙ୍କ ଭିତରେ କଳି ଲଗାଇବା ପାଇଁ ବହୁତ ଥର ଚେଷ୍ଟା କରିଛନ୍ତି। ଦେଶର ପୂର୍ବାଞ୍ଚଳରେ ମୁସଲମାନମାନଙ୍କ ସଂଖ୍ୟା ଅଧିକ। ସେମାନଙ୍କୁ ହିନ୍ଦୁଙ୍କଠାରୁ ଅଲଗା କରି ଦେବାପାଇଁ ଭାଇସ୍‌ରୟ କର୍ଜନ ୧୯୦୫ରେ ବଙ୍ଗ ପ୍ରଦେଶକୁ ଦୁଇଭାଗ କରି ଦେଇଥିଲେ। ଲୋକେ ତାର ଘୋର ବିରୋଧ କରିବାରୁ ଇଂରେଜମାନେ ତାଙ୍କ ଭୁଲ୍‌କୁ ସଂଶୋଧନ କଲେ। ମୌଲାନା ଆଜାଦ ଥିଲେ ପ୍ରକୃତ ମୁସଲମାନ। କୋରାନ୍ ଉପରେ ସେ ଯେଉଁ ଲେଖା ଲେଖିଛନ୍ତି ତୁମେ ଯଦି କେବେ ତାକୁ ପଢ଼ିଲେ ବୁଝି ପାରିବ। ସେ କହୁଥିଲେ ଯେ ପ୍ରକୃତ ଧର୍ମ ଲୋକମାନଙ୍କୁ ଏକାଠି କରାଏ, ଭାଗ ଭାଗ କରି ଦିଏ ନାହିଁ। ୧୯୪୦ରେ ରାମଗଡ଼ କଂଗ୍ରେସ ଅଧିବେଶନରେ ସେ ସଭାପତି ହୋଇଥିଲେ। ସେଠାରେ ସେ ଭାଷଣ ଦେଇ କହିଥିଲେ, "ଆମର ଭାଷା, ଆମର କବିତା, ଆମର ସାହିତ୍ୟ, ଆମର ସଂସ୍କୃତି, ଆମର କଳା, ଆମର ପୋଷାକ, ବ୍ୟବହାର, ରୀତି ଓ ନୀତି ସବୁଥିରେ ଆମ ମିଳିତ ଉଦ୍ୟମର ମୋହର ମରା ହୋଇଛି। ହଜାର ହଜାର ବର୍ଷ ଧରି ଏକାଠି ବସବାସ କରିବା ଫଳରେ ଆମେ ସମସ୍ତେ ଗୋଟିଏ ସାଧାରଣ ଜାତି ହିସାବରେ ଗଢ଼ି ଉଠିଛୁ।" କିନ୍ତୁ ମହମ୍ମଦ ଅଲି ଜିନ୍ନାଙ୍କ ନେତୃତ୍ୱରେ ଗଢ଼ା ହୋଇଥିବା ମୁସଲିମ ଲିଗ୍ ଦାବୀ କରୁଥାଏ ଯେ ହିନ୍ଦୁ ମୁସଲମାନ ଦୁଇଟି ସ୍ୱତନ୍ତ୍ର ଜାତିର ଲୋକ। ପ୍ରତ୍ୟେକଙ୍କ ପାଇଁ ଗୋଟିଏ ଲେଖାଏଁ ଅଲଗା ଦେଶ ଦରକାର। ତେଣୁ ଭାରତକୁ ଦୁଇଭାଗ କରିଦେବା ପାଇଁ ସେମାନେ ଚାହୁଁଥିଲେ। ଏଥିରେ ଆମ ନେତାମାନଙ୍କର ବଡ଼ ଦୁଃଖ ହେଲା, କିନ୍ତୁ ମୁସଲମାନମାନଙ୍କର ଉଗ୍ର ମନୋଭାବ ଦେଖି ସେଥିରେ ସେମାନେ ରାଜି ହୋଇଗଲେ। ଭାରତଠାରୁ ପାକିସ୍ତାନ ଭିନ୍ନ ହୋଇଗଲା।

୧୯୨୯ ମସିହା ଡିସେମ୍ବର ମାସରେ କଂଗ୍ରେସର ଲାହୋର ଅଧିବେଶନରେ ସଭାପତି ହୋଇଥିଲେ ଜବାହରଲାଲ ନେହେରୁ। ଭାରତର ଲକ୍ଷ୍ୟ 'ପୂର୍ଣ୍ଣ ସ୍ୱରାଜ୍ୟ' ବା ସମ୍ପୂର୍ଣ୍ଣ ସ୍ୱାଧୀନତା ବୋଲି ସେଠାରେ ସେ ଏକ ପ୍ରସ୍ତାବ ଆଗତ କଲେ। ସେ କହିଲେ, "ସ୍ୱାଧୀନତା ଅର୍ଥ ଖାଲି ବିଦେଶୀ ଶାସନରୁ ମୁକ୍ତି ପାଇବା ନୁହେଁ।" ଜବାହରଲାଲଙ୍କ ଏହି କଥାର ଅସଲ ଅର୍ଥ ତୁମେ ବୁଝିବାକୁ ଚେଷ୍ଟାକର। ତାହା ହେଲେ ଯେଉଁ ନୂଆ ଭାରତ ଗଢ଼ିବା ପାଇଁ ସେ ସ୍ୱପ୍ନ ଦେଖୁଥିଲେ ସେହିପରି ଦେଶକୁ ଗଢ଼ିବା ପାଇଁ ତୁମେ ସାହାଯ୍ୟ କରି ପାରିବ। ସ୍ୱାଧୀନତାର ଅର୍ଥ ହେଲା ଅନ୍ୟ ଆଖିରେ ନଦେଖି ନିଜ ଆଖିରେ ଦେଖିବା। ଉଦାହରଣ ସ୍ୱରୂପ ୟୁରୋପର ଲୋକେ ଯେଉଁ ଇତିହାସ ଲେଖୁଥିଲେ ଆଗେ ଏଠିଆର ଲୋକଙ୍କ ପଢ଼ିବା ପାଇଁ ତାହା ଥିଲା ଏକମାତ୍ର ଇତିହାସ ବହି। ପୃଥିବୀର ଇତିହାସ କହିଲେ ୟୁରୋପର ଇତିହାସକୁ ବୁଝାଉଥିଲା। ତାକୁ ପଢ଼ିଲେ ବୁଝାଯିବ, ଯେପରି ଦୁନିଆରେ ଆଉ କେଉଁଠି କିଛି ବଡ଼ ଘଟଣା ଘଟିନାହିଁ। ଜବାହାରଲାଲଙ୍କ "ବିଶ୍ୱ ଇତିହାସର ଝଲକ" ପଢ଼ିଲେ ସବୁକଥା ଜଣାପଡ଼େ। ତାଙ୍କ ଝିଅଙ୍କ ପାଇଁ ସେ ଏହାକୁ ଲେଖିଥିଲେ। ସବୁପିଲା ଏ ବହି ପଢ଼ିବା ଉଚିତ।

ଅତୀତରେ ଚୀନା, ଜାପାନୀ, ମୁସଲିମ୍ ଓ ଭାରତୀୟ ସଭ୍ୟତା କେତେ ଉଚ୍ଚକୁ ଉଠିଥିଲା ତାହା ଏଥିରୁ ଜଣା ପଡ଼ିବ। ଜବାହରଲାଲଙ୍କ ଭାଷାରେ ସ୍ୱାଧୀନତାର ଅର୍ଥ ନୁହେଁ, ଅନ୍ୟ ଲୋକମାନେ ନିଜର ଯେଉଁ ପ୍ରଶଂସା କରିବେ ତାକୁ ଆଖିବୁଜି ଗ୍ରହଣ କରିଯିବା କିମ୍ବା ତୁମ ନିଜର ଯାହା ପ୍ରାପ୍ୟ ନୁହେଁ ତାକୁ ଶୁଣି ମନେ ମନେ ଖୁସି ହୋଇଯିବା। ସେ ବାରମ୍ବାର କହୁଥିଲେ ଯେ ଅତୀତରେ ଭାରତୀୟମାନେ ଅନେକ ବଡ଼ ବଡ଼ କାମ କରିଛନ୍ତି ସତ, ସେମାନେ ଅନେକ ଖରାପ ରାସ୍ତାରେ ମଧ୍ୟ ଯାଇଛନ୍ତି। ଅନେକ ରକମର କୁସଂସ୍କାରରେ ସେମାନେ ବିଶ୍ୱାସ କରନ୍ତି। କଠିନ ପରିଶ୍ରମ କରିବାର ଅଭ୍ୟାସ ଭୁଲି ଗଲେଣି। ଭାରତ ବିଜ୍ଞାନ ଉପରେ ଅଧିକରୁ ଅଧିକ ଜୋର ଦେବା ଉଚିତ ବୋଲି ସେ ଚାହୁଁଥିଲେ। କାରଣ ବହୁ ବୈଜ୍ଞାନିକ ଉଦ୍ଭାବନ ଫଳରେ ଲୋକେ ବଞ୍ଚିବାକୁ ଯେ ଖାଲି ସୁବିଧା ସୁଯୋଗ ପାଆନ୍ତି ତାହା ନୁହେଁ, ଏହା ଫଳରେ ଲୋକଙ୍କ ମନରୁ ବହୁ ଅନ୍ଧ ବିଶ୍ୱାସ ମଧ୍ୟ ଚାଲିଯାଏ। ଜବାହରଲାଲ ପୁଣି କହୁଥିଲେ ଯେ ପୃଥିବୀରେ ଯେତେ ଯେଉଁଠି ଲୋକେ ପରାଧୀନ ହୋଇ ରହିଛନ୍ତି, ସେମାନଙ୍କୁ ମୁକ୍ତ କରିବା ପାଇଁ ଭାରତ ଲଢ଼ିବ। ଗରିବୀ ମଧ୍ୟ ଅନେକ ପରିମାଣରେ ଦାସତ୍ୱ ସଙ୍ଗେ ସମାନ। ତେଣୁ ଦେଶର ଗରିବ ଲୋକମାନଙ୍କୁ ପ୍ରକୃତ ସ୍ୱାଧୀନତା ଦେବାକୁ ପଡ଼ିବ। ଦେଶର ସମ୍ବିଧାନ ତିଆରି ଲାଗି ବିଧାୟକ ସଭାର ବୈଠକ ବସିଥାଏ। ୧୯୪୭ ଅଗଷ୍ଟ ୧୫ ତାରିଖ ଅଧ ରାତିରେ ଏହି ବୈଠକରେ ଭାଷଣ ଦେଇ ଆମ ନେତାମାନେ ଏହିପରି ଏକ ସ୍ୱାଧୀନ ଭାରତ ଗଢ଼ିବାର ଆଶା ପୂରଣ କରିବା ଲାଗି ନିଜେ ନିଜକୁ ଉତ୍ସର୍ଗ କଲେ। ସେଥିରେ ନେହେରୁ ଯେଉଁ ଭାଷଣ ଦେଇଥିଲେ, ତାହା ସବୁଦିନ ପାଇଁ ମନେ ରହିବ। ସେ କହିଥିଲେ, "ଇତିହାସରେ ଏହିପରି କେବେ କେମିତି ଏକ ମୁହୂର୍ତ୍ତ ଆସେ, ଯେତେବେଳେ ଆମେ ପୁରୁଣାରୁ ନୂଆକୁ ଓହରି ଆସୁ। ଗୋଟାଏ ଯୁଗ ଶେଷ ହୋଇଯାଏ। ରୁଦ୍ଧ ହୋଇ ରହିଥିବା ଗୋଟାଏ ଜାତିର ଆତ୍ମା ନିଜ ମୁହଁରେ ଭାଷା ଫୁଟାଏ। ଏବେ ସେହି ପବିତ୍ର ମୁହୂର୍ତ୍ତ ଆସିଛି। ଆମେ ଭାରତ ତଥା ଭାରତୀୟଙ୍କ ସେବାରେ ଏବଂ ତାହାଠାରୁ ଆହୁରି ମହତ କାମ ମାନବ ଜାତିର ସେବାରେ ନିଜକୁ ଉତ୍ସର୍ଗ କରିବାପାଇଁ ଶପଥ ନେଉଛୁ।"

ଏବେ ଆମର ଏହି ବିରାଟ ଦେଶ, ବିରାଟ ଜନତା, ବହୁ ପରମ୍ପରା ଓ ବହୁ ଧର୍ମ ପାଇଁ ଏକ ସମ୍ବିଧାନ ତିଆରି କରିବାକୁ ପଡ଼ିବ। ସେଥିପାଇଁ ବିଧାୟକ ସଭା ବହୁତ ପରିଶ୍ରମ କଲେ। ସେଥିରେ ସଭାପତି ହୋଇଥିଲେ ଡଃ ରାଜେନ୍ଦ୍ର ପ୍ରସାଦ। ପରେ ସେ ହେଲେ ଭାରତର ପ୍ରଥମ ରାଷ୍ଟ୍ରପତି। ଗାନ୍ଧିଜୀ ଯେତେବେଳେ ଚମ୍ପାରଣ ଯାଇଥିଲେ, ସେ ମଧ୍ୟ ନୀଳଚାଷୀମାନଙ୍କ ଦୁର୍ଦ୍ଦଶା ଦୂର କରିବାପାଇଁ ଗାନ୍ଧିଜୀଙ୍କ ସହିତ ଯୋଗ ଦେଇଥିଲେ। ୧୯୩୪ରେ ବିହାର ଭୂମିକମ୍ପ ବେଳେ ସେ ଲୋକମାନଙ୍କୁ ବହୁତ ସାହାଯ୍ୟ କରିଥିଲେ। ହିନ୍ଦୁ ମୁସଲମାନ ମିଳିମିଶି କିପରି ଶାନ୍ତିରେ ଚଳିବେ ସେଥିପାଇଁ ଉଦ୍ୟମ କରିଥିଲେ। ବିଧାୟକ ସଭାରେ ସଭାପତି ହେବାପରେ ପ୍ରଥମେ ଭାଷଣ ଦେଇ ସେ କହିଥିଲେ, "ବର୍ତ୍ତମାନ ଆମ ସମସ୍ତଙ୍କ ଦାୟିତ୍ୱ ହେଉଛି ଏକ ମୁକ୍ତ ଓ ସ୍ୱାଧୀନ ଭାରତ ପାଇଁ ସମ୍ବିଧାନ ତିଆରି କରିବା, ଯେଉଁଥିରେ ଏହି ବିରାଟ ଦେଶରେ ବାସ କରୁଥିବା ସବୁ ଲୋକଙ୍କୁ ସବୁ ବିଷୟରେ ସ୍ୱାଧୀନତା ମିଳି ପାରିବ। ଦଳ ଜାତି ଓ ଧର୍ମର ବାଛ ବିଚାର ରହିବ ନାହିଁ। ପ୍ରତ୍ୟେକ ଲୋକ କାମ କରିବା, ଚିନ୍ତା କରିବା, ନିଜ ନିଜର ବିଶ୍ୱାସକୁ ଅତୁଟ ରଖିବା ଓ ପୂଜା ପାଠ କରିବାର ସବୁ ପ୍ରକାର ସୁବିଧା ପାଇବେ। ପ୍ରତ୍ୟେକ ଲୋକଙ୍କୁ ନିଜ ନିଜ କ୍ଷେତ୍ରରେ ଶୀର୍ଷକୁ ଉଠିବାପାଇଁ ସବୁ ସୁବିଧା ସୁଯୋଗ ଦିଆଯିବ।

୧୯୨୯ ମସିହା ଡିସେମ୍ବର ମାସରେ ଲାହୋର କଂଗ୍ରେସ ଅଧିବେଶନ ପରେ ଲୋକେ ଭାରତର ସବୁଆଡେ ୧୯୩୦ ଜାନୁୟାରୀ ୨୬ରେ ସ୍ୱାଧୀନତା ଦିବସ ପାଳିଲେ ଓ ସମସ୍ତେ 'ପୂର୍ଣ୍ଣ ସ୍ୱରାଜ' ପାଇଁ ଶପଥ ନେଇଥିଲେ । ତାର ଠିକ୍ କୋଡ଼ିଏ ବର୍ଷ ପରେ ୧୯୫୦ ମସିହା ଜାନୁଆରୀ ୨୬ତାରିଖ ଦିନ ଭାରତ ହେଲା ଏକ "ସାର୍ବଭୌମ ଗଣତନ୍ତ୍ରବାଦୀ ଜନରାଜ୍ୟ ।"

